# ଇଣ୍ଡୋନେସିଆ
# ଅନୁଭୂତି




ଜନଶକ୍ତି ପୁସ୍ତକାଳୟ

ବାଙ୍କାବଜାର, କଟକ-୨

It is not just for the conventional formality that I deem it my duty to speak a few words, but the necessity is commanded by the very character of the book. In the recent few years, quite a good number of works have come out dealing with travels, but the present volume is off the beaten track. If for many years the books on the said subject have intensely dealt with the writer's personal story, I mean the story of his comforts, behaviour, diary—independent to a considerable extent of the true reflections of the country visited, the present publication in contrast, portrays a vivid realisation of the innermost feeling of a nation, in the most fascinating style and appropriate language. The first and foremost principle of this presentation has been to introduce to our people the heart of a nation which, apart from the development of the current times, is one with the heart of our people through the verdict of History.

And yes, because it is the question of Indonesia, both myself and the author have been so very cautious. The author of this work who, besides having the qualifications of a member of the Indian delegation, was a writer,

was privileged to be entertained and received by the cultural concerns and individuals of Indonesia, from the moment his poems in English and Indonesian had appeared in the papers of Bandung. The book has dealt with cultural relation of India and Indonesia, in brief its history and present state, the story of the Freedom's fight of the glorious people of the country of islands, the latest and most significant political complications which not only concern the fate of the world's sixth biggest nation, but matter for the Asian solidarity and the world peace—and last but not least, the documents of Indonesia's exemplary efforts to grow as an independent nation in the true spirit of the term.

Here I leave the work to the readers, with my grateful acknowledgments to *Sj. Santidev Ghose* of the Department of Music and Dance of Viswabharati University for providing me with some original photographs on Indonesia's cultural life. I am very much thankful to the friend of ours, who has undergone a good deal of efforts to correct the book with deep scrutinising outlook.

***Publisher***

ମୌଳିକ ଭ୍ରମଣବୃତ୍ତାନ୍ତ ଆମ ସାହିତ୍ୟରେ ଖୁବ୍ ବେଶୀ ନାହିଁ ଏବଂ ମଜାର କଥା ଯେ, ୟୁରୋପ ବା ଆମେରିକାଉପରେ ଯାହା ବା ଲେଖାଲେଖି ଅଛି, ଆମ ସହିତ ନିବିଡ଼ ସମ୍ପର୍କ ଥିବା ଦେଶମାନଙ୍କ ବିଷୟରେ ମୋଟେ ନାହିଁ କହିଲେ ଚଳେ ।

ଅଥଚ ଏ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଏସିଆର ଇତିହାସରେ ଏପରି ବହୁ ଗୁରୁତର ନୂତନ ପରିଚ୍ଛେଦର ସଂଯୋଗ ହୋଇଛି, ଯାହାଫଳରେ ଭାରତ ବର୍ଷ ଭଳି ବିରାଟ ପ୍ରଗତି-ପଥଗାମୀ ଏକ ଦେଶପକ୍ଷରେ ନିଜର ପ୍ରତିବେଶୀମାନଙ୍କୁ ଜାଣିବା ଅତୀତ ତୁଳନାରେ ଆଜି ଏକାନ୍ତ ଅପରିହାର୍ଯ୍ୟ ହୋଇପଡ଼ିଛି ।

ଆଉ ଇଣ୍ଡୋନେଶିଆ କଥା ତ କହିବା ବାହୁଲ୍ୟ ମାତ୍ର । ଆମ ମାତୃଭୂମିଠାରୁ ବହୁ ଦୂରରେ, ଭାରତ ଓ ପ୍ରଶାନ୍ତ ମହାସାଗରର ସଂଯୋଗ ସ୍ଥଳରେ, ପ୍ରାଗୈତିହାସିକ ଐଶ୍ୱର୍ଯ୍ୟସମୃଦ୍ଧ, ସହସ୍ର ସହସ୍ର ଦ୍ୱୀପସମନ୍ୱିତ ଏପରି ଏକ ଜାତି ଆଜିକୁ ଯୁଗ ଯୁଗ ଧରି ତିଷ୍ଠି ଆସିଛି, ଯାହାର ପରିଚୟରେ ଏତିକି କୁହାଯାଇପାରେ ଯେ, ଭାରତୀୟ ପ୍ରାଣର ଏତେ ସନ୍ନିକଟ ଆଉ କେହି ନାହିଁ । ସୁତରାଂ ଇଣ୍ଡୋନେଶିଆ ନ ହୋଇ ଅନ୍ୟ କୌଣସି ଦେଶ ହୋଇଥିଲେ

ଭ୍ରମଣବୃତ୍ତାନ୍ତ ପ୍ରକାଶ କରିବାର ବିଶେଷ ଆଗ୍ରହ ମୋର ହୁଏତ ନ ଥାନ୍ତା ।

ଇତିହାସ ସହିତ ସମ୍ପର୍କ ରଖିଥିବା ପ୍ରତ୍ୟେକେ ତ ଜାଣନ୍ତି, ବହୁ ଘଟନାପ୍ରବାହ-ବିଧୌତ ଏଇ ଦ୍ୱୀପମାଳାର ପାଣିପବନରେ ପ୍ରାଚୀନ ଭାରତୀୟ, ବିଶେଷକରି ଉତ୍କଳୀୟ ଶିଳ୍ପ, ସଂସ୍କୃତି, କୃଷ୍ଟିର କେତେ ରୋମାଞ୍ଚକର ସ୍ମୃତି ମିଶ୍ରିତ । କିନ୍ତୁ କେବଳ ସୁପ୍ରାଚୀନ ଇତିଗାଥା ନୁହେଁ, ସାମ୍ପ୍ରତିକ ଘଟନାବୈଚିତ୍ର୍ୟସମୂହଦ୍ୱାରେ ବି ଇଣ୍ଡୋନେସିଆ ସହ ଭାରତର ଆନ୍ତରିକ ନିବିଡ଼ତା ସ୍ପଷ୍ଟରୁ ସ୍ପଷ୍ଟତର ହୋଇଉଠିଛି ।

ଶ୍ରୀ ନେହେରୁ ସେଦେଶ ବୁଲି ଯାଇଥିବାବେଳେ ସେଠାକାର ଜଣେ ଚିନ୍ତାଶୀଳ ପ୍ରାବନ୍ଧିକ ଲେଖିଥିଲେ, "ଆଜି ଆମର ମନେ ପଡ଼ୁଛି ଖ୍ରୀଷ୍ଟୀୟ ଦ୍ୱିତୀୟ ଓ ତୃତୀୟ ଶତକର ହିନ୍ଦୁ-ଉପନିବେଶ କଥା । ତାପରେ ବହୁ ଶତାବ୍ଦୀ ବିତିଗଲାଣି, କିନ୍ତୁ ଏଇ ଦୁଇ ଜାତି ଏକାନ୍ତ ନିବିଡ଼ ବନ୍ଧନରେ ଆବଦ୍ଧ ହୋଇ ରହିଛନ୍ତି । ......ହିନ୍ଦୁଉପନିବେଶ ସହ ଇଣ୍ଡୋନେସିଆର ଲିଖିତ ଇତିହାସର ଆରମ୍ଭ । ତା ପୂର୍ବର ଯୁଗତକ ପ୍ରାଗୈତିହାସିକ । ...... ଏଇ ହିନ୍ଦୁଯୁଗରେହିଁ ଆମ ସଭ୍ୟତାର ଉଚ୍ଚତର ବିକାଶ, ନୂତନ ରାଜ୍ୟର ପ୍ରତିଷ୍ଠା ଏବଂ ବହିର୍ବାଣିଜ୍ୟର ସୂଚନା ।" *

ସୁପ୍ରାଚୀନ ହିନ୍ଦୁ ସଂସ୍କୃତିର ଚୂଡ଼ାନ୍ତ ନିଦର୍ଶନ ଆଜି ବି ଇଣ୍ଡୋନେସିଆର ଆଚାର ବ୍ୟବହାର, ଭାଷା ଓ ଶିଳ୍ପରେ ପ୍ରୋଜ୍ଜ୍ୱଳ-ଭାବରେ ପ୍ରତିଭାତ । ଦ୍ୱିତୀୟ ଓ ତୃତୀୟ ଖ୍ରୀଷ୍ଟାବ୍ଦରେ ଖୋଦିତ

* Indonesian Information-July 1950

ସଂସ୍କୃତ ଶିଳାଲିପି ସୁମାତ୍ରା, ଜାଭା ଓ ବୋର୍ଣ୍ଣିଓରେ ସୁରକ୍ଷିତ ଅବସ୍ଥାରେ ଆଜି ବି ଭାରତୀୟ ସଭ୍ୟତାର ଐତିହାସିକ ଜୟଯାତ୍ରାର ନିଦର୍ଶନ ବହନ କରି ରହିଛି । * ଜାଭା ଦ୍ୱୀପର ଅଧିବାସୀମାନେ କେବଳ ସଂସ୍କୃତ ଶିକ୍ଷା କରୁ ନ ଥିଲେ ; ସଂସ୍କୃତ ଭାଷାର ଚର୍ଚ୍ଚା ଉତରୁହିଁ ସେମାନେ ସେମାନଙ୍କର ନିଜସ୍ୱ ଯେଉଁ ଭାଷା ସୃଷ୍ଟି କରିଥିଲେ, ଖ୍ରୀଷ୍ଟପର ଦଶମରୁ ପଞ୍ଚଦଶ ଶତକ ପର୍ଯ୍ୟନ୍ତ ତାହାର ପ୍ରଚଳନ ଅବ୍ୟାହତ ରହିଥିଲା । ଇତିହାସବିତ୍‌ମାନେ ଏହାକୁ *Indo-Javanese Language* ନାମରେ ନାମିତ କରିଅଛନ୍ତି ।

ଯୁଗେ ଯୁଗେ ଜାଭାହିଁ ସମଗ୍ର ଦ୍ୱୀପପୁଞ୍ଜର ରାଜନୈତିକ ମର୍ମକେନ୍ଦ୍ର । ହିନ୍ଦୁବସତି ଯୁଗରେ ଏହା ଯେପରି ସତ୍ୟ ଥିଲା, ଆଜି ବି ସେହିପରି । ଖ୍ରୀଷ୍ଟପର ପଞ୍ଚମ ଶତାବ୍ଦୀରେ ପୂର୍ଣ୍ଣ ବର୍ମଣ ନାମକ ଜଣେ ଭାରତୀୟ ପଶ୍ଚିମ-ଜାଭାରେ ରାଜତ୍ୱ କରିଥିବାର ପ୍ରମାଣ ସେଠାକାର ଚାରିଗୋଟି ସଂସ୍କୃତ ଶିଳାଲିପିରୁ ମିଳେ । ଏହାର ଦୁଇ ତିନି ଶହ ବର୍ଷପରେ ସଞ୍ଜୟ ନାମକ ହିନ୍ଦୁରାଜା କେନ୍ଦ୍ରଜାଭାରେ ଏକ ଶକ୍ତିଶାଳୀ ରାଜ୍ୟ ସ୍ଥାପନ କରିଥିଲେ । ସୁମାତ୍ରା ଦ୍ୱୀପରେ ପ୍ରାୟ ଚତୁର୍ଥ ଶତାବ୍ଦୀରେ ଶ୍ରୀବିଜୟ ନାମକ ହିନ୍ଦୁରାଜା ରାଜତ୍ୱ କରୁଥିଲେ । ଆରବ୍ୟ ଲେଖକମାନଙ୍କ ବିବରଣୀରୁ ଜଣା ପଡ଼େ, ପ୍ରାୟ ଅଷ୍ଟମ

---

* "There is abundant evidence to show that the language, literature, religion, art and political and social institutions of India made a thorough conquest of these people."

*Ancient India*- R. C. Mazumdar

ଶତାବ୍ଦୀ ବେଳକୁ ଶୈଳେନ୍ଦ୍ର ବଂଶର ଦକ୍ଷ ନରପତିମାନେ ଜାଭା, ବାଲି, ସୁମାତ୍ରା, ବୋର୍ଣ୍ଣିଓ, ଏସମସ୍ତ ଦ୍ୱୀପକୁ ଏକଶାସନାଧୀନରେ ଆଣି ଏପରି ଏକ ଶକ୍ତିଶାଳୀ ବିରାଟ ସାମ୍ରାଜ୍ୟ ଗଠନ କରିଥିଲେ 'ଯାହା ଭିତରପଟେ ଖୁବ୍ ଦ୍ରୁତଗାମୀ ପୋତ ମଧ୍ୟ ଦୁଇ ବର୍ଷ ସମୟମଧ୍ୟରେ ବୁଲି ଆସିପାରନ୍ତା ନାହିଁ ।'

ନବମ ଶତାବ୍ଦୀ ବେଳକୁ, ଶୈଳେନ୍ଦ୍ର ସାମ୍ରାଜ୍ୟର ପତନ ହେବାପରେ ମଧ୍ୟ ପୂର୍ବ-ଜାଭାରେ ହିନ୍ଦୁ ଆଧିପତ୍ୟ ରହିଥିଲା । ଭାରତ ଓ ଜାଭା ଦ୍ୱୀପର ପ୍ରାଚୀନ ସୌହାର୍ଦ୍ଦ୍ୟ ସମ୍ପର୍କରେ ପ୍ରମାଣ ମିଳେ 'ନଗର କୃତାଗମ' ନାମକ ପ୍ରାଚୀନ କାବ୍ୟରୁ । ଜାଭାର ପଣ୍ଡିତମାନେ 'ଜମ୍ବୁଦ୍ୱୀପ' ଓ ଜାଭାର ପରସ୍ପର ସମ୍ପର୍କ କଥା ଉଚ୍ଛ୍ୱସିତ କଣ୍ଠରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ତତ୍କାଳୀନ କାଞ୍ଚି ନଗରର ସନ୍ନ୍ୟାସୀ କବି ବୁଧାଦିତ୍ୟ ଓ ତାମିଲ ବ୍ରାହ୍ମଣ ମୁତାଲି-ସହ୍ରଦୟ ମଧ୍ୟ ଜାଭା ଦ୍ୱୀପର ରାଜାମାନଙ୍କ ସମ୍ପର୍କରେ ବହୁ କବିତା ରଚନା କରିଥିଲେ । ※

ଆଜି ଇଣ୍ଡୋନେଶୀୟମାନଙ୍କର ଯେଉଁ ଇସ୍‌ଲାମ୍ ଧର୍ମ ତାହା ମଧ୍ୟ ଭାରତବର୍ଷରୁ ଉତ୍ପନ୍ନ । ଭାରତୀୟ ବଣିକସମ୍ପ୍ରଦାୟ, ବିଶେଷ-କରି ଗୁଜରାଟୀମାନେ ଏହି ଧର୍ମ ପ୍ରଥମେ ସୁଦୂର ପ୍ରାଚ୍ୟର ଏଇ ଦ୍ୱୀପମାଳାକୁ ନେଇ ଯାଇଥିଲେ । କାଳକ୍ରମେ ଜାଭାର ଶାସକ ସୁମାତ୍ରାର ମୁସଲମାନ ଶାସକଙ୍କର କନ୍ୟାକୁ ବିବାହ କରି ନୂଆ ଧର୍ମରେ ଦୀକ୍ଷିତ ହେଲେ । ଇସ୍‌ଲାମ୍ ଧର୍ମର ପରିବ୍ୟାପ୍ତି ସଙ୍ଗେ ସଙ୍ଗେ ଶେଷ ହିନ୍ଦୁ ଶାସକମାନେ ବାଲି ଦ୍ୱୀପରେ ଆଶ୍ରୟ

※ *Suvarna Dvipa*-R. C. Mazumdar

ନେଇଥିଲେ । ସେଇ ଦିନଠୁଁ ବାଲି ଦ୍ୱୀପ ହିନ୍ଦୁ ସଂସ୍କୃତିର ପୂଜାପୀଠ ହୋଇଆସିଛି । ଆଜିପର୍ଯ୍ୟନ୍ତ ତାର ଏ ଗୌରବ ବଜାୟ ରହିଛି ।

ଅଷ୍ଟମ ଶତାବ୍ଦୀ ବେଳକୁ ଜାଭାରେ ଶୈଳେନ୍ଦ୍ରମାନଙ୍କ ଦ୍ୱାରା ମହାଯାନ ବୌଦ୍ଧଧର୍ମ ଖୁବ୍ ପ୍ରସାରିତ ହୋଇଥିଲା । କିନ୍ତୁ ଭାରତରେ ଯେପରି ବ୍ରାହ୍ମଣ୍ୟଧର୍ମ ଓ ବୌଦ୍ଧଧର୍ମଭିତରେ ସ୍ପଷ୍ଟ ତାରତମ୍ୟ ଥିଲା, ଜାଭାରେ ସେପରି ନ ଥିଲା । ଜାଭାଦ୍ୱୀପର ନିଜସ୍ୱ ପରିବେଶ-ଭିତରେ ଶିବ-ବୁଦ୍ଧ ନାମକ ଏକ ବିଶିଷ୍ଟ ଧର୍ମମତର ଉଦ୍ଭବ ହୋଇଥିଲା । 'ନଗର କୃତାଗମ' ଗ୍ରନ୍ଥର ବହୁ ସ୍ଥାନରେ ଏହି ଧର୍ମ ବିଷୟରେ ଉଲ୍ଲେଖ ରହିଛି । *

ଏଇସମସ୍ତ ପ୍ରାଚୀନ ଐତିହାସିକ ପୃଷ୍ଠଭୂମିକୁ ଦୃଷ୍ଟିରେ ରଖି ଆଜି ଦେଖାଯାଏ, ଇଣ୍ଡୋନେଶିଆର ସାମାଜିକ ଜୀବନରେ ହିନ୍ଦୁ ଓ ବୌଦ୍ଧ ପ୍ରଭାବ କେତେ ଗୁରୁତର ଭୂମିକା ଗ୍ରହଣ କରିଛି । ଗୋଟିଏ ମହାଜାତିର ଜୀବନଧାରାର ଗତିପଥକୁ ପ୍ରଭାବିତ କରିବା ସଙ୍ଗେ ସଙ୍ଗେ ଏହିସବୁ ଐତିହାସିକ ଘଟଣା ଭାରତବର୍ଷ ସହ ସେଜାତିର ଯେଉଁ ସମ୍ପର୍କ ସୃଷ୍ଟି କରିଛି, ସମସ୍ତ ଭାବପ୍ରବଣତା ବାଦ୍ ଦେଇ କହିଲେ ମଧ୍ୟ, ଏତେ ଦୂରର ଦୁଇଟି ଦେଶମଧ୍ୟରେ ଏଭଳି ଏକ ସମ୍ପର୍କର ଦୃଷ୍ଟାନ୍ତ ଇତିହାସରେ ଏକମେବାଦ୍ୱିତୀୟମ୍ ।

ତିନି ଶହରୁ ଊର୍ଦ୍ଧ୍ୱ ବର୍ଷ ଧରି ଡଚ୍ ସାମ୍ରାଜ୍ୟବାଦଦ୍ୱାରା ଶୋଷିତ ହେବାପରେ ୧୯୪୫ରେ ଯେତେବେଳେ 'ଇଣ୍ଡୋ-ନେଶିଆର ସ୍ୱାଧୀନତା ଘୋଷିତ ହେଲା, ସେତେବେଳେ

---

* "ଦ୍ୱୀପମୟ ଭାରତର ବୌଦ୍ଧ ସାହିତ୍ୟ ଓ ମହାଯାନ ଧର୍ମମତ"
ହିମାଂଶୁ ଭୂଷଣ ସରକାର

ଭାରତବର୍ଷର ନେତୃବର୍ଗ ଓ ଜନସାଧାରଣଙ୍କ ଭିତରେ ଏସିଆର ଅନ୍ୟ ଏକ ରାଷ୍ଟ୍ରର ବନ୍ଧନମୁକ୍ତିରେ ଯଥେଷ୍ଟ ଉଦ୍ଦୀପନା ଦେଖା ଦେଇଥିଲା । କିନ୍ତୁ ସ୍ୱାଧୀନତାପ୍ରାପ୍ତିର ପରବର୍ତ୍ତୀ ବହୁ ମାସ ଧରି ସେଠାକାର ରାଜନୀତିରେ ଯେଉଁସବୁ ରୋମହର୍ଷକ ଘଟଣା ଘଟିଲା ଏବଂ ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ସୁଦୂର ପ୍ରାଚ୍ୟର ସମୁଦ୍ରଗର୍ଭରୁ ତାର ଶେଷ ଲଙ୍ଗର ଟେକି ନେଇଯିବା ପୂର୍ବରୁ ଯେଉଁ ରାଜନୈତିକ ଖେଳ ଦେଖାଇଲା, ସେଥିରେ ଭାରତବର୍ଷ ସମେତ ସମଗ୍ର ଏସିଆର ଜନସାଧାରଣଙ୍କର ପ୍ରଭୂତ ଶିକ୍ଷାଲାଭ ହୋଇଛି ।

ଦ୍ୱିତୀୟ ମହାଯୁଦ୍ଧର ଦ୍ୱିତୀୟାର୍ଦ୍ଧରେ ଜାପାନୀମାନଙ୍କ ଦ୍ୱାରା ଇଣ୍ଡୋନେଶିଆ ଅଧିକୃତ ହେବାପରେ ମିତ୍ରପକ୍ଷ ତରଫରୁ ଆମେରିକାନ୍ ସୈନ୍ୟବାହିନୀ ୧୯ ଏପ୍ରିଲ୍ ୧୯୪୪ରେ ଉତ୍ତର-ସୁମାତ୍ରାରେ ଯାଇ ପହଞ୍ଚିଲେ । ପରେ ପରେ ବ୍ରିଟିଶ ସୈନ୍ୟ-ବାହିନୀ ମଧ୍ୟ ଯାଇ ପହଞ୍ଚିଥିଲେ । କିନ୍ତୁ ମହାଯୁଦ୍ଧରେ ଜାପାନ ପରାଭୂତ ହେବାପରେ ଏହିସବୁ ସୈନ୍ୟବାହିନୀ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବା ତ ଦୂରର କଥା, ଓଲଟି ୧୯୪୫ ସାଲର ସତର ଅଗଷ୍ଟରେ ପ୍ରତିଷ୍ଠିତ ଇଣ୍ଡୋନେଶୀୟ ସ୍ୱାଧୀନ ସରକାର ବିରୁଦ୍ଧରେ ନିର୍ମମ ଯୁଦ୍ଧ ଆରମ୍ଭ କଲେ । ଫାସିଜମ୍‌ର ଦଂଶନଜର୍ଜର ଡଚ୍‌ମାନଙ୍କ ପକ୍ଷରେ ସାମ୍ରାଜ୍ୟବାଦୀ ଭାଇବିରାଦରମାନଙ୍କଠାରୁ ସାହାଯ୍ୟ ଆଣିବା ଛଡ଼ା ସେତେବେଳେ ଆଉ ଅନ୍ୟ କିଛି ଉପାୟ ନ ଥିଲା । ସବୁଠୁଁ ଦୁଃଖର କଥା ହେଉଛି, ବ୍ରିଟିଶ ସରକାର ସେତେବେଳେ ଭାରତୀୟ ଫୌଜମାନଙ୍କୁ ପଠାଇ ଇଣ୍ଡୋନେଶିଆ-ଉପରେ ଜଘନ୍ୟ ଦମନଲୀଳା ଚଳାଇଥିଲେ । ଏତିକବେଳେ ବହୁ ଦୁଃଖଦାୟକ ଘଟଣା ଘଟିଥିଲା । ୧୯୪୫ ଅକ୍ଟୋବର ଶେଷ

ସପ୍ତାହରେ ଡକ୍ଟର ସୁକର୍ଣ୍ଣଙ୍କ ସହ ଡଚ୍ ସେନାପତି ଜେନେରଲ୍ କ୍ରିଷ୍ଟିସନ୍‌ଙ୍କ କଥାବାର୍ତ୍ତା ଶେଷ ହେବାର ଅଳ୍ପ ସମୟ ପରେ ଭାରତୀୟ ଇନ୍‌ଫେଣ୍ଟ୍ରି ବ୍ରିଗେଡ୍ (୪୯) ର କମାଣ୍ଡର ଜେନେରଲ୍ ଏ. ଡବ୍ଲୁ. ଏସ୍. ମାଲ୍‌ବିଙ୍କୁ ଅନ୍ୟାନ୍ୟ ବହୁ ଭାରତୀୟ ସୈନିକଙ୍କ ସହ ସୁରବାୟାଠାରେ ବଡ଼ ନାଟକୀୟ ଭାବରେ ହତ୍ୟା କରାଗଲା । କେନ୍ଦ୍ରଜାଭାରେ ଭାରତୀୟ ଗୁର୍ଖା ସୈନ୍ୟବାହିନୀ ସହ ଇଣ୍ଡୋ-ନେଶୀୟ ଜାତୀୟବାହିନୀର ଦୀର୍ଘକାଳବ୍ୟାପୀ ସମ୍ମୁଖ-ଲଢ଼େଇ ଚାଲିଥାଏ । ସୁରବାୟାରେ ଥିବା ସାଧାରଣ ବ୍ୟବସାୟୀ ଭାରତୀୟ-ମାନଙ୍କୁ ମଧ୍ୟ ବେଶ୍ କିଛି କାଳ ଧରି ଭୁଲ୍ ବୁଝାମଣାର ଶିକାର ହେବାକୁ ପଡ଼ିଥିଲା । ଉତ୍ତ୍ୟକ୍ତ ଜନତାହାତରେ ସେଦିନ ଭାରତୀୟ ସମାଜର ନେତା ଶ୍ରୀ କୁନ୍ଦନ ଦାସ * ମଧ୍ୟ ଆହତ ହେଲେ । ଇଣ୍ଡୋନେଶୀୟମାନଙ୍କ ବିରୁଦ୍ଧରେ ଭାରତୀୟମାନଙ୍କ ବ୍ୟବହାର କରିବା ବିରୁଦ୍ଧରେ ଶ୍ରୀ କୁନ୍ଦନ ଦାସଙ୍କ ପ୍ରତିବାଦ † ଓ ରେଡ଼ିଓ ଏପିଲ୍‌କୁ ବ୍ରିଟିଶ କର୍ତ୍ତୃପକ୍ଷ ଖାତିର କରି ନ ଥିଲେ ।

ଇଣ୍ଡୋନେଶିଆର ସମରଭୂମିରେ ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତିର ଏଇ ମିଳନ ଯେ ଇତିହାସର କେତେବଡ଼ ଏକ ପରିହାସ, ସେକଥା କହିବା ବାହୁଲ୍ୟ । ଇଣ୍ଡୋନେଶୀୟ ଜନ-ଅଭ୍ୟୁତ୍ଥାନ ବିରୁଦ୍ଧରେ ଡଚମାନଙ୍କର ଯୁଦ୍ଧଭିତରେ ଏପରି ସବୁ ଶକ୍ତିର ମିଳନ ଘଟିଥିଲା, ଯେଉଁମାନେ ଏକଦା ପ୍ରାଚ୍ୟର ରଣଭୂମିରେ ନିଜ ନିଜର ଦଖଲ ଜାରି କରିବାପାଇଁ ପରସ୍ପରଭିତରେ ଜଘନ୍ୟ

---

* ସୁରବାୟାରେ ଥିବାବେଳେ ଏହି ବିଶିଷ୍ଟ ବ୍ୟକ୍ତିଙ୍କ ସମ୍ପର୍କରେ ଆସିଥିଲି ।

† *Hindusthan Standard*-Nov. 2, 1945

ପ୍ରକାରେ କାମୁଡ଼ାକାମୁଡ଼ି ହୋଇଥିଲେ । ("It is by the sheer brute of force that the Dutch imperialism has been restored in Indonesia. The inefficient Dutch people are legally not in a position to crush down the Indonesian rising. Behind them stand the English and French imperialists too. it Is a paradox of history. Only a hundred years ago, the same Dutch, English and French people quarrelled over the east and shed each other's blood······But the enemies are now friends.······ Besides everything the British imperialists know that if the Dutch will be wiped out from Indonesia, their own imperialism in India will be at a greater stake ; the French know that their position will be nowhere in Indo-China, if the brother imperialists are driven out from a neighbour empire.") *

ମହାଯୁଦ୍ଧପରବର୍ତ୍ତୀ ଇଣ୍ଡୋନେଶିଆର ଏଇସବୁ ଘଟନା ସାରା ଦୁନିଆକୁ ଚେତାଇଦେଇଥିଲା ଯେ, ସୁଦୂର ପ୍ରାଚ୍ୟରେ ଏକ ନବତମ ଚେତନାର ଉଜ୍ଜ୍ୱଳ ଅଭ୍ୟୁଦୟ ବରୁଦ୍ଧରେ କେତେକ ଅନ୍ଧ ଶକ୍ତି ଉନ୍ମୂଳ ଆର୍ତ୍ତନାଦ ଆରମ୍ଭ କରିଛନ୍ତି ।

ଜେନେରାଲ୍ ମାଲବଙ୍କ ହତ୍ୟାପରେ ବ୍ରିଟିଶ ସରକାର ତାଙ୍କ ସ୍ଥଳରେ ଜେନେରାଲ୍ ସି. ମନ୍‌ସେଲ୍ ନାମକ ସେନାପତିଙ୍କୁ

* *Westerners in the East* (1946) Manmathnath Das

ଅଭିଷିକ୍ତ କରି ପୁଣି ସୁରବାୟ୍ଆ ପଠାଇଲେ । ମିଳିତ ସାମ୍ରାଜ୍ୟ-ବାଦୀ ପକ୍ଷର ସହସ୍ର ଦମନ ସତ୍ତ୍ୱେ ଯେତେବେଳେ ଇଣ୍ଡୋନେଶୀୟ-ମାନେ ନିଜକୁ ଅନମନୀୟ ବୋଲି ପ୍ରମାଣିତ କଲେ, ସେତେବେଳେ ଆକ୍ରମଣକାରୀ ଶକ୍ତିମାନେ ନାନାପ୍ରକାର ଅଭିସନ୍ଧିମୂଳକ ସନ୍ଧିର ପ୍ରସ୍ତାବ ଦେଲେ । କିନ୍ତୁ ଏସବୁ ଫଳପ୍ରସୂ ହେଲା ନାହିଁ । ସୁରବାୟ୍ଆ ଓ ଜୋଗ୍ଜାକର୍ତ୍ତାରେ ଯୁଦ୍ଧ ଆହୁରି ଘନୀଭୂତ ହେଲା । ସୁରବାୟ୍ଆ ବନ୍ଦର ଦେଇ ଜାହାଜ-ଭର୍ତ୍ତି ଦଳ ଦଳ ବିଦେଶୀ ସପରିବାର ପଳାୟନ କଲେ ଏବଂ ସେମାନଙ୍କର ପଳାୟନ ଏତେ ବେଶୀ ଅତର୍କିତ ଥିଲା ଯେ, ଉପକୂଳବର୍ତ୍ତୀ ସମୁଦ୍ର ଅଞ୍ଚଳରେ ଜାପାନୀ ଜାହାଜକୁ ପ୍ରତିହତ କରିବାପାଇଁ ନିଜ ତରଫରୁ ଖଞ୍ଜା ଯାଇଥିବା ମାଇନ୍‌ରେ ଧକ୍‌କା ଖାଇ ବିସ୍ଫୋରଣ ହେତୁ କେତୋଟି ଜାହାଜ ଜଳମଗ୍ନ ହୋଇଗଲା ।

ଇଣ୍ଡୋନେଶିଆର ପୁରୁଣା ରାଜଧାନୀ ଜୋଗ୍‌ଜାକର୍ତ୍ତାଠାରେ ବିପ୍ଳବୀମାନେ ସେମାନଙ୍କର ମୁଖ୍ୟ ଘାଟୀ ସ୍ଥାପନ କରିଥିଲେ । ଏଇଠାରେ ପରାଭୂତ ଜାପାନୀମାନଙ୍କଠାରୁ ଏମାନେ ପ୍ରାୟ ୭୨ ଟି ଉଡ଼ାଜାହାଜ ଏବଂ ଅପର୍ଯ୍ୟାପ୍ତ ବନ୍ଧୁକ କମାଣ ଓ ଗୋଳା ବାରୁଦ ଛଡ଼ାଇ ରଖିଥିଲେ । ଭାରତୀୟ ବାହିନୀମାନଙ୍କୁ ଯୁଦ୍ଧ ସକାଶେ ସାଧାରଣତଃ ଏଇ ଭୟାବହ ଘାଟୀକୁ ପଠା ଯାଉଥିଲା । ବ୍ରିଟିଶ ସରକାରର ଏଇ ନୀତି ବିରୁଦ୍ଧରେ ସମଗ୍ର ଭାରତବର୍ଷରେ ତୁମୁଳ ବିକ୍ଷୋଭ ଦେଖା ଯାଇଥିଲା ଏବଂ ଇଣ୍ଡୋନେଶିଆରେ ଭାରତୀୟ-ମାନଙ୍କୁ ବ୍ୟବହାର କରିବା ବିରୁଦ୍ଧରେ ମୌଲନା ଆବୁଲ କାଲମ୍ ଆଜାଦଙ୍କ ବିବୃତିପରେ ଦେଶବ୍ୟାପୀ ପ୍ରତିବାଦ-ସଭାମାନ ଅନୁଷ୍ଠିତ ହୋଇଥିଲା । *

* *Hindusthan Standard* Nov. 4, 1945

ସମଗ୍ର ଇଣ୍ଡୋନେଶିଆର ଚତୁର୍ଦ୍ଦିଗରେ ବ୍ରିଟିଶ ସୈନ୍ୟବାହିନୀ-ଦ୍ୱାରା ଅନୁଷ୍ଠିତ ନୃଶଂସ ହତ୍ୟାକାଣ୍ଡ ଓ ଅମାନୁଷିକ ବର୍ବରତାର ସଫେଇ ଦେଇ ସାମ୍ବାଦିକ ସମ୍ମିଳନୀରେ ଆଟ୍‌ଲି ସାହେବ କହିଲେ ଯେ, କେବଳମାତ୍ର ଡଚ୍ ଓ ଇଣ୍ଡୋନେଶୀୟମାନଙ୍କୁ ପରସ୍ପର ନିକଟବର୍ତ୍ତୀ କରିବାପାଇଁ ବ୍ରିଟିଶ୍ କର୍ତ୍ତୃପକ୍ଷ ଦାୟିତ୍ୱ ନେଇଛନ୍ତି !
(Hindusthan Standard-Nov. 20, .1945)

କ୍ରମଶଃ ବ୍ରିଟିଶ କର୍ତ୍ତୃପକ୍ଷ ନିଜର ଅସହାୟତା ହୃଦୟଙ୍ଗମ କରିଥିଲେ । ମଧ୍ୟଶେଷରେ ଡଚ୍‌ମାନଙ୍କର ଓ ନିଜର ଚକ୍ଷୁଲଜ୍ଜା ରକ୍ଷା କରିବା ଭଳି କେତେକ ସର୍ତ୍ତବିଶିଷ୍ଟ ଏକ ଖସଡ଼ା ଚୁକ୍ତିନାମା ବ୍ରିଟିଶ ସରକାର ଇଣ୍ଡୋନେଶୀୟମାନଙ୍କୁ ବିଚାର କରିବାପାଇଁ ଦେଲେ । କିନ୍ତୁ ସେତେବେଳକୁ ଅବସ୍ଥା ଆହୁରି ଗୁରୁତର । ଭାରତ ଓ ସିଂହଳଭିତରେ ଥିବା ତିରିଶ ମାଇଲର ସାମୁଦ୍ରିକ ବ୍ୟବଧାନରୁ କମ୍ ବ୍ୟବଧାନ ଜାଭା ଓ ସୁମାତ୍ରାମଧ୍ୟରେ । ସେତେବେଳକୁ ଡଚ୍ ଜାହାଜମାନଙ୍କର ସତର୍କ ପ୍ରହରା ବ୍ୟର୍ଥ କରି ଜାଭାର ବିଦ୍ରୋହୀ ଯୁବସମ୍ପ୍ରଦାୟର ଏକ ଅଂଶ ସୁମାତ୍ରା ଯାଇ ସେଠାକାର ଜନ-ଆନ୍ଦୋଳନକୁ ଅପେକ୍ଷାକୃତ ଅଧିକ ଶାଣିତ କରି-ପାରିଥିଲେ । କ୍ରମେ କ୍ରମେ ଗ୍ରେଟ୍ ବଡ଼ ସମସ୍ତ ଦ୍ୱୀପରେ ଦୁର୍ଭେଦ୍ୟ ବିଦ୍ରୋହର ଦୁର୍ଗ ସଂଗଠିତ ହୋଇଉଠିଲା । ସାମ୍ରାଜ୍ୟବାଦ ନିର୍ଲଜ୍ଜତାକୁ ଧିକ୍‌କାର କରି ଏସିଆର ସମୁଦ୍ରଗର୍ଭରେ ଏଇ କ୍ରୋଧାନ୍ଧ ଆଗ୍ନେୟ ଦ୍ୱୀପପୁଞ୍ଜ ସେତେବେଳେ ସତେ ଯେପରି ଟକମକ ହୋଇ ଫୁଟୁଥିଲା । ସ୍ୱାଧିକାର-ପ୍ରମତ୍ତ ଇଣ୍ଡୋନେଶୀୟମାନଙ୍କ ପାଇଁ ଯେକୌଣସି ସର୍ତ୍ତମୂଳକ ଚୁକ୍ତି ସେତେବେଳେ ଅସହ୍ୟ ଥିଲା ।

ଡକ୍ଟର ଦୁବାଟାସ୍ ଭାନ୍ ମୁକ୍ ପ୍ରଦତ୍ତ ଖସଡ଼ା ଚୁକ୍ତିପତ୍ର ପ୍ରତ୍ୟାଖ୍ୟାନ କରି ଡକ୍ଟର ସୁକର୍ଣ୍ଣ ଏତିକବେଳେ ଏକ ଉଲ୍ଲେଖଯୋଗ୍ୟ

ଭାଷଣରେ କହିଥିଲେ, "For two months now the world has seen how Indonesians have nothing to do with Dutch imperialism. All we want is recognition of our independence and opportunity to perfect our own system of Government. Justice denies the Dutch any say in our affairs .....the Dutch handed over the Indonesians to the Japanese in a condition of military unpreparedness and intellectual backwardness. The Indonesians lacked the wherewithal to stand up to Japanese militarists and oppression and fell easy victims to Japanese propaganda. After having bound us hand and foot to the Japanese, the Dutch have not the shadow of a moral right to take the virtuous stand that we co-operated with Japanese, all the more so because the Japanese obtained a greater measure of co-operation from Dutch men and women in their employ than from the Indonesians."

ପରିଶେଷରେ, ସମୟର ଦୁର୍ବାର ରଥଚକ୍ରତଳେ ଡଚ୍‌ମାନଙ୍କର, ପୁନାର ଆକାଙ୍‌କ୍ଷା ଚୂର୍ଣ୍ଣୀଭୂତ ହୋଇଗଲା । ବ୍ରିଟିଶ ଓ ଅନ୍ୟ ସ୍ୱାକ୍‌ଟରେଡ୍‌ ଶକ୍ତିମାନଙ୍କର ସମସ୍ତ ରାଜନୈତିକ ବୁଦ୍ଧିମନ୍ତ୍ର ରହୁଁ ରହୁଁ ଅର୍ଥହୀନ ହୋଇପଡ଼ିଲା ।

ଆଜ ଇଣ୍ଡୋନେଶିଆ ସ୍ୱାଧୀନତା ଲାଭ କରିବାର ବାରଟି ବର୍ଷ ବିତିଗଲାଣି । ଏଇ ଗୋଟିଏ ଯୁଗଭିତରେ ପୃଥିବୀର ରାଜନୈତିକ ରଙ୍ଗମଞ୍ଚରେ ଯେଉଁମାନେ ଏକାନ୍ତ-ନାଟକୀୟ ଭୂମିକା

ଗ୍ରହଣ କରିଛନ୍ତି, ସେମାନଙ୍କ ଭିତରୁ ଇଣ୍ଡୋନେଶିଆର ସ୍ଥାନ ପ୍ରଥମ ଶ୍ରେଣୀରେ । ଏ ବହି ମୁଁ ଲେଖୁଥିବାର ଅବ୍ୟବହିତ ପୂର୍ବରୁ ଚଳିତ ବର୍ଷର ପ୍ରଥମାର୍ଦ୍ଧରେ ମଧ୍ୟ ସେ ଦେଶର ରାଜନୈତିକ ବାତାବରଣରେ ବହୁ ଶୃଙ୍ଖଲ୍ୟକର ପରିବର୍ତ୍ତନ ବଡ଼ ଚମକପ୍ରଦ-ଭାବରେ ହୋଇଯାଇଛି । ଇଣ୍ଡୋନେଶିଆରେ ରହିଥିବା ସମୟରେ ସେଦେଶକୁ ଯେତିକି ଜାଣିବାର, ଚିହ୍ନିବାର ସୁଯୋଗ ପାଇଥିଲି, ସେହି ଅଭିଜ୍ଞତାକୁ ଭିତ୍ତି କରି ଉଲ୍ଲିଖିତ ଘଟନାବଳୀର କାରଣ ନିର୍ଦ୍ଦେଶ କରିବାକୁ ଚେଷ୍ଟା କରିଛି ବିଭିନ୍ନ ଅଧ୍ୟାୟଭିତରେ ।

ତେବେ ତା ନିଜସ୍ୱ ରାଜନୈତିକ ବର୍ଣ୍ଣଛଟାର ମୁହୁର୍ମୁହୁ ନାଟକୀୟ ପରିବର୍ତ୍ତନପାଇଁ ଇଣ୍ଡୋନେଶିଆ ଯେତିକି କୌତୂହଳର କେନ୍ଦ୍ରସ୍ଥାନ, ଜାତି-ବିମୁକ୍ତି ପ୍ରାଚ୍ୟର ଉଦାତ୍ତ ବାର୍ତ୍ତାବହ ଭାବରେ, ବିଶ୍ୱ-ଶାନ୍ତି ପ୍ରତିଷ୍ଠାର ଅନ୍ୟତମ ପ୍ରୟାସୀ ଅଗ୍ରଦୂତ ହିସାବରେ ଆଜି ଇଣ୍ଡୋନେଶିଆ ସେତିକି ଶ୍ରଦ୍ଧାର ପାତ୍ର । ଇଣ୍ଡୋନେଶୀୟ-ମାନଙ୍କ ଚରିତ୍ରର କେତେକ ବିଶେଷତ୍ୱ ମୋତେ ବିମୁଗ୍ଧ କରିଥିଲା । ସମସ୍ତ ଦଳାଦଳି, ମତଭେଦ ସତ୍ତ୍ୱେ ସର୍ବସାଧାରଣଙ୍କ ଭିତରେ ରାଷ୍ଟ୍ରକୁ ପୁନର୍ଗଠିତ କରିବାର କି ହାର୍ଦ୍ଦିକ ଆକାଂକ୍ଷା ! ରାଷ୍ଟ୍ରର ଅନୁନ୍ନତିପାଇଁ ଅଶିକ୍ଷାକୁ ସେମାନେ ମୁଖ୍ୟତଃ ଦାୟୀ କରିଛନ୍ତି । ଏଇ ନିରକ୍ଷରତା ବିରୁଦ୍ଧରେ ସେମାନଙ୍କର ଯେଉଁ ଅଭିଯାନ, ତାହାହିଁ ମୋତେ ସର୍ବାପେକ୍ଷା ଆକୃଷ୍ଟ କରିଥିଲା । ବିଜ୍ଞାନସମ୍ମତ ଏକ ସଂକ୍ଷିପ୍ତ ପ୍ରଣାଳୀ ଆବିଷ୍କାର କରି ଆଜି ସେଦେଶର ଯୁବସମାଜ ଓ ଶିକ୍ଷକଶ୍ରେଣୀ ନିରକ୍ଷରମାନଙ୍କୁ କ୍ଷିପ୍ର ଗତିରେ ଅତି ଅଳ୍ପ ସମୟଭିତରେ ସାକ୍ଷର କରିବାରେ ଲାଗିଛନ୍ତି । ନିରକ୍ଷରତା-ଦୂରୀକରଣ ସେଜାତିର ଏକ ପବିତ୍ର ସାଧନାର ଅଙ୍ଗ

ହୋଇପଡ଼ନ୍ତି । ଦଶ ବର୍ଷଭିତରେ ସେମାନେ ନିରକ୍ଷରତାର ସମୂଳ ଅବସାନ ପାଇଁ ଶପଥ ନେଇଛନ୍ତି । ("A simple sentence has been constructed whose words can each be illustrated so that each word can be under· stood from the picture, These words in turn are divided into their component syelables, which together illustrate the vowel and consonant sounds of the language. Each vowel sound is shown by pictures of the mouth shaping the sound, besides the letter indicating it. It has been found that this process easily makes the pupil aware of the differences between sounds. The subjectmatter of the sentence is one that only comes from the everyday lives of the villagers, but one they find attractive."—
*Bandung Spirit* June 2, 1956)

ସାଢ଼େ ତିନି ଶହ ବର୍ଷର ଡଚ୍ ଶାସନ କଥା ତ କହିବା ବାହୁଲ୍ୟ ମାତ୍ର; ଅଳ୍ପ କେତେ ଦିନଭିତରେ ଜାପାନୀମାନେ ଲୁଣ୍ଠନରାଜର ଯେଉଁ ହାତ ଦେଖାଇଲେ, ତାହାର ଉଦାହରଣ ମଧ୍ୟ ବିରଳ । ଦାରିଦ୍ର୍ୟ ବିରୁଦ୍ଧରେ ସମସ୍ତ ପ୍ରକାର ଐକ୍ୟବଦ୍ଧ ସଂଗ୍ରାମ- ପାଇଁ ଆଜି ଇଣ୍ଡୋନେଶିଆର ପ୍ରଗତିକାମୀ ଜନସାଧାରଣ ବ୍ୟାକୁଳ । ("The value of gold bullions, diamonds and other valuables taken away by the Japanese occupational forces from Indonesia during the pacific war was not less than two billion dollars."—*Times of Indonesia*—May 30, 1956 )

ସାମ୍ରାଜ୍ୟବାଦର ଆକଣ୍ଠ ଲୁଣ୍ଠନ-ତୃଷାର ଏବେ ବି ଅବସାନ ଘଟି ନାହିଁ । ଆଜି ବି ଇଣ୍ଡୋନେଶିଆର ଅଂଶ ପଶ୍ଚିମ-ଇରିଆନ୍ ସାମ୍ରାଜ୍ୟବାଦ-କବଳିତ । ଇଣ୍ଡୋନେଶିଆରେ ଥିବା-ବେଳେ କୌଣସି ଲେଖାରେ ପଢ଼ିଥିଲି, ଏକଦା ପ୍ରେସିଡେଣ୍ଟ ସୁକର୍ଣ୍ଣ ଭାଷଣ ଦେବାବେଳେ ଜନସାଧାରଣ ସମସ୍ୱରରେ ଆବାଜ ଛୋଡୁଥିଲେ—"ମାର୍ଦ୍ଧେକା" (Victory) । ଆଜି ସୁକର୍ଣ୍ଣ ଭାଷଣ ଦେଲେ ଶ୍ରୋତାମାନଙ୍କ ଭିତରୁ ସ୍ଲୋଗାନ୍ ଉଠେ—"ଇରିଆନ୍ ।"

ସ୍ୱାଧୀନ ଇଣ୍ଡୋନେଶିଆ ବୁଲି ଦେଖିବାର ଯେତିକି ସୁଯୋଗ ପାଇଛି, ସେ ଅଭିଜ୍ଞତାକୁ କେବଳ ବ୍ୟକ୍ତିଗତ ଡାଏରି-ପରିବେଷଣରେ ସୀମାବଦ୍ଧ ନ ରଖି ଆଉ ଟିକିଏ ଅନ୍ତର୍ମୁଖୀ କରିବାର ଚେଷ୍ଟା କରିଛି । ମୋର ଆଲୋଚନା ଆପେକ୍ଷିକ, ଅପୂର୍ଣ୍ଣ ହୋଇପାରେ; କିନ୍ତୁ ଏ ବ୍ୟକ୍ତିଗତ ଅଭିଜ୍ଞତା ଅନୁସନ୍ଧିତ୍ସୁମାନଙ୍କୁ ପ୍ରଚୁର ସାହାଯ୍ୟ କରିବ, ଏ ବିଶ୍ୱାସ ରଖୁଛି ।

ଆଜିର ଏଇ ସୁଯୋଗରେ ମୋତେ ପ୍ରତିନିଧି ହିସାବରେ ନିର୍ବାଚିତ କରି ପଠାଇଥିବା ଉତ୍କଳ ରାଜ୍ୟ ପ୍ରସ୍ତୁତି କମିଟିର ସମସ୍ତ ସଭ୍ୟ, ତତ୍କାଳୀନ କଲେଜ ୟୁନିୟନସମୂହର କର୍ମକର୍ତ୍ତାଗଣ ଏବଂ ଯେଉଁ ଶୁଭେଚ୍ଛୁମାନଙ୍କ ସାହାଯ୍ୟରେ ମୋର ଯାତାୟତ ସୁଗମ ହୋଇଥିଲା, ସେମାନଙ୍କ ଉଦ୍ଦେଶ୍ୟରେ ଗଭୀର କୃତଜ୍ଞତା ଜଣାଉଛି ।

କଟକ : ୨୨. ୬. ୫୭

ମନୋଜ ଦାସ

# ସୂଚୀପତ୍ର

# ପୁଞ୍ଚକ ଉପତ୍ୟକାର ଏକ ଭୟାବହ ରାତ୍ରି

ଲେଖା-ଅନୁକୂଳ ବେଳେ ମନେ ହେଉଛି, ଏ ପରିଚ୍ଛେଦକୁ କେହି ଡିଟେକ୍ଟିଭ କାହାଣୀର ଆରମ୍ଭ ବୋଲି ଭାବି ବସିବେନି ତ !

କାରଣ ରାତି ସେତେବେଳେ ଦୁଇଟା । ସମୁଦ୍ର-ପତ୍ତନରୁ ସାତ ହଜାର ଫୁଟ ଉଚ୍ଚ ପୁଞ୍ଚକ ଗିରିମାଳାର ପାଇନ୍-ବାର୍ଚ୍ଚ-ବଣ-ଆଚ୍ଛାଦିତ ଗିରିସଙ୍କଟଭିତରେ ସେତେବେଳେ ଆଶ୍ଚର୍ଯ୍ୟ ନୀରବତାର ରାଜତ୍ୱ । ହିମମୟ ଚନ୍ଦ୍ରାଲୋକଭିତରେ ଅନନୁଭୂତ ତନ୍ଦ୍ରାର ମୋହ । କିଛିଦିନ ତଳେ "A Night to Remember' ନାମକ ଲେଖାରେ ପଢ଼ିଥିଲି—ଲେଖିଥିଲେ ଜଣେ ଉଦ୍ଧାରପ୍ରାପ୍ତ ଆରୋହୀ, ଯେ-ଯେଉଁ ଦିନ ନିଶାର୍ଦ୍ଧରେ ଏକଦା ପୃଥିବୀର ବୃହତ୍ତମ ସମୁଦ୍ରପୋତ 'ଟାଇଟାନିକ୍' ଶହଶହ ଯାତ୍ରୀଙ୍କୁ ଗର୍ଭରେ ଧରି ନିମଜ୍ଜିତ ହେଲା, ସେଦିନ ପରି ମହାସାଗରର ସଲିଳ ମର୍ମ ସବୁଠୁଁ ବେଶୀ ପ୍ରଶାନ୍ତ, ସବୁଠୁଁ ବେଶୀ ପ୍ରଫୁଲ୍ଲ ନୀଳ ଦେଖା ଯାଉଥିଲା । ଆଜି ପୁଞ୍ଚକ ଉପତ୍ୟକାର ଏଇ ଭୟାବହ ରଜନୀର ସନ୍ଧ୍ୟା, ମୋତେ ଲାଗୁଥିଲା ଯେପରି ସବୁଠୁଁ ବେଶୀ ତନ୍ଦ୍ରାତୁର, ଅକଳ୍ପନୀୟ ନୀରବତାର ଜମାଟ ଏବଂ ଭୟାତୁର ଏକ ଭବିତବ୍ୟର ଗର୍ଭବତୀ ।

ସେଠାରେ ନିଶୀଥର ସୂତ୍ରପାତ ହୁଏ ପ୍ରାୟ ଅପରାହ୍ଣ ପାଞ୍ଚଟାଠାରୁ । ଛଅଟା ବାଜିବାପରେ ନିଜ ନିଜର କାଠ-କୋଠରେ କିମ୍ବା ତିଆରି କ୍ୟାବିନ୍ ବା ହୋଟେଲ ପ୍ରାଙ୍ଗଣର ବାହାରକୁ ଯିବା ନିରାପତ୍ତା ଦୃଷ୍ଟିରୁ ମନା । ଆପଦ କଣ ? ବନ୍ୟଜନ୍ତୁ ତ ନିଶ୍ଚୟ । ତା ଛଡ଼ା......

ଭୟାନକ ଚମକ ଲାଗି ଯେତେବେଳେ ନିଦ ଛୁଟିଗଲା, ଦୁଇ ମିନିଟ ପର୍ଯ୍ୟନ୍ତ ଶନ୍ତ୍ରା କଲି – କଣ ହୋଇପାରେ ଏ ଶବ୍ଦ ! ସେ କ୍ୟାବିନ୍‌ର ଅନ୍ୟ ବନ୍ଧୁ ଜଣକ—ବଙ୍ଗଳାର ପ୍ରତିନିଧି—ମଧ୍ୟ ସେତେବେଳେ ଉଠି ବସିଥିଲେ । ତାପରେ ମୁଁ ନିଦ୍ରାକ୍ଷୁଧିବରେ ଧୀରେ ଧୀରେ ବିଦ୍ୟୁତ୍ ସୁଇଚ୍ ଟିପିବାର ଚେଷ୍ଟା କଲି । ଲାଭ ନ ଥିଲା । ପରେ ଜାଣିଲି ଯେ, ବହୁ ପୂର୍ବରୁ ଲାଇନ୍ କାଟି ଦିଆ ଯାଇଥିଲା । ବନ୍ଦରଣାଭ୍ୟନ୍ତରକୁ ଆସୁଛୁ, ଏତିକବେଳେ ମୋଠୁଁ ସାମାନ୍ୟ କେତେ ହାତ ଛଡ଼ା ପାଖ କ୍ୟାବିନ୍‌ଟିର କାଚଝରକାକୁ ଟିକ୍‌ଟିକ୍ କରିଦେଇ ଗୁଳି ପାଞ୍ଚଟି ବୁଲେଟ୍ ସମ୍ମୁଖରେ ଥିବା ସନ୍ତରଣାଗାରର ରଙ୍ଗୀନ ପାଣିଭିତରେ ସିସ୍-ସିସ୍ ଶବ୍ଦ କରି ଆଶ୍ରୟ ନେଲା । ବନ୍ଧୁକର ଶବ୍ଦ ଭୟଙ୍କରଭାବରେ ଦୂରଦୂରାନ୍ତର ଶିଳା-କାନ୍ଥସବୁ ଦିଗରେ ପ୍ରତିଧ୍ୱନି ତୋଳି ତୋଳି ବିଲୀନ ହୋଇଗଲା । ଝରକାବାହାରକୁ ଅନାଇଲି, ଆକାଶର ମୈଦାନରେ କଳା କଳା ମେଘର ଚକାଭଉଁରୀଭିତରେ ଚପଳ ଜହ୍ନ । ଜହ୍ନଦିହକୁ ଯିମିତି ଲାଗିନାଇଛି ପୁଞ୍ଜକ ଆଗ୍ନେୟଗିରିର ଶୁଷ୍କ ଶୁଭ୍ର ଲାଭା-ପରିହିତ ମୁନିଆ ଶୃଙ୍ଗ—ଜହ୍ନଆଲୁଅରେ ମଜା-ସୁନା ଭଳି ଚକ୍‌ଚକ୍ ଜଳୁଛି । ଲକ୍ଷ୍ୟ କଲି, ଆମ କ୍ୟାବିନ୍‌ଠୁଁ ପ୍ରାୟ ଦୁଇ ଶହ ଗଜ ଦୂରରେ ଓ ପ୍ରାୟ ବାର ତେଇଶ ହାତ ଊର୍ଦ୍ଧ୍ୱରେ ଅବସ୍ଥିତ ହୋଟେଲ୍‌ରେ ଲାଇଟ୍‌ସବୁ ହଠାତ୍ ଜଳିଉଠିଲା ଏବଂ ଆଲୁଅ-ସବୁର ଆଗ ଦେଇ ବହୁ ବ୍ୟକ୍ତି ଯିବାଆସିବା କରୁଥିବା ଭଳି ଲାଗିଲା ।

ତାପରେ ଏକ ମର୍ମାନ୍ତକ ଚିତ୍କାର ( ପରଦିନ ସକାଳେ ଦେଖିଲି ଏକ ବନ୍ଧୁକକାୟ ରକ୍ତାକ୍ତ ଧୂମ୍ରଦେହୀ ଆଲ୍‌ସେସିଆନ୍‌ର ଶବ ) ! ଉପର୍ଯ୍ୟୁପରି ବୁଲେଟ୍‌ର ଶବ୍ଦରୁ ଏତେବେଳେ ଜଣାଗଲା

ଯେ, ତାହା ସାଧାରଣ ବନ୍ଧୁକ ବା ରାଇଫେଲ୍‌ରୁ ନିଃସୃତ ନୁହେଁ—ଅତି ଶକ୍ତିଶାଳୀ ଷ୍ଟେନ୍‌ଗାନ୍ କାର୍ଯ୍ୟ କରୁଛି !

ହେ ପ୍ରଭୁ ! ଏତିକବେଳେ ଆମ କ୍ୟାବିନ୍‌କବାଟରେ ଠକ୍-ଠକ୍ ଶବ୍ଦ—ଯେ ବଡ଼ି ଶୁଭିଲା ଟେଲିଗ୍ରାଫ୍ ଯନ୍ତ୍ରଭଳି । ବର୍ତ୍ତମାନ ବଙ୍ଗୀୟ ବନ୍ଧୁ ଏବଂ ମୁଁ ଥରେ କମ୍ବଳଭିତରେ ମୁହଁ ଲୁଚୁଇ, ପୁଣି ଥରେ ପଦାକୁ କାଢ଼ି ଘରଫର ନିକଟକୁ ଘୁଞ୍ଚିଯାଇ ମୁହଁ ଦେଖିବାର ଚେଷ୍ଟା କରୁଥାଉଁ । ହଠାତ୍ କବାଟ ଚ୍ରୁଏଁ ଚ୍ରୁଏଁ ଖୋଲିଗଲା ଏବଂ କିଏ ଗୋଟାଏ ଭିତରକୁ ପଶିଆସିଲା······ ଅରେ, ପାର୍ବତ୍ୟ ଭଲ୍ଲୁକ ବଚାଟିଏ !

ରକ୍ଷା ! ଭାଲୁ ନୁହେଁ, ମୋର ପାକସ୍ଥାନୀ ଖବକାପୁ ଦୋସ୍ତ୍ * ଯିଏକି ଏଇ ଚୂଡ଼ାନ୍ତ ବିପଜ୍ଜନକ ମୁହୂର୍ତ୍ତରେ ବି କର୍ତ୍ତୃପକ୍ଷପ୍ରଦତ୍ତ ଦାମୀ କମ୍ବଳଟି ଦେହରେ ଗୁଡ଼ାଇ ସାଥିରେ ନେଇ ଆସିବାକୁ ଭୁଲି ନ ଥିଲେ । ସେ କଣ କହିବେ ବୋଲି ମୋ କାନ ଦରାଣ୍ଡିଲେ । ମୁଁ ଏକାଗ୍ରତାସହକାରେ ସମର୍ପଣ କଲି ଏବଂ ମେଞ୍ଚାଏ ଛେପ ସହ ଅନୁଭବ କଲି, ସେ ଫିସ୍‌ଫିସ୍ କରି କେବଳ କହୁଛନ୍ତି "ହସ୍‌ଟିଲ୍ଲା"।

ଏଥର ଘମାଘୋଟ ବୁଲେଟ୍‌ର ଶବ୍ଦ—ପ୍ରକମ୍ପିତ ପାହାଡ଼, ବଣ, ଝରଣା ଓ ଆଗ୍ନେୟଗିରି ଟପି ମୃତ୍ୟୁର ହାହାକାର ଭଳି

---

*ଭାରତବର୍ଷକୁ ଫେରିବାର ପ୍ରାୟ ଛଅ ମାସପରେ ଜଣେ ସାମ୍ବାଦିକଙ୍କଠୁଁ ଶୁଣିଲି, ଏଇ ଦୋସ୍ତ୍ ଟି ଦିଲ୍ଲୀରେ ତାଙ୍କୁ କହିଥିଲେ, "ଏକ୍ ଡାକୁକୋ ହାମ୍ ଐସା ଏକ୍ ଘୁସା ଲଗାୟା, ଶାଲା ଦିର୍-ଘିର୍ କର୍‌କେ ସୁଇମିଂପୁଲ୍‌କା ଅନ୍ଦର୍ ଗିର୍‌ଗିୟା । ଔର୍ ସବ୍ ଭାଗ୍‌ଗିୟା" ନଚେତ୍ "ମାର୍‌ମାର୍‌କେ ସବ୍ ଶାଲ୍‌କା ପାତ୍‌ଲୁନ୍ ଢିଲ୍ଲ କର୍‌ଦେ ସକ୍‌ତା ।"

ଦୂରକୁ ଦୂର ହୋଇ ଯାଉଥାଏ । ଆମ କ୍ୟାବିନ୍‌ଦୁଇଟିର ଅନ୍ୟ ପଟେ ଆଉ ମୋଟେ ତିନ ଜଣ ଭାରତୀୟ ବନ୍ଧୁ ଅଛନ୍ତି । ତନ୍ମଧ୍ୟରୁ ଜଣେ ଏ ଦେଶକୁ ଆସିବାବେଳେ କଲିକତାରୁ ବ୍ୟାଂକକ୍‌ଭିତରେ ପାଞ୍ଚ ଥର ବାନ୍ତି କରିଥିଲେ, ବି. ଓ. ଏ. ସି. ଅନୁଷ୍ଠାନର ସୁଦକ୍ଷ-ଚାଳିତ ବ୍ୟୋମଯାନମଧ୍ୟରେ । ଦ୍ୱିତୀୟ ଜଣକ ଥରେ ଗୋଟିଏ କୁକୁର-କବଳରୁ ଖସିଆସିବାପାଇଁ ( ପରେ ଜଣା ଯାଇଥିଲା ଯେ, ସେ କୁକୁରଟି ଗୋଟାଏ ହେଟାଠାରୁ ଆତ୍ମରକ୍ଷାପାଇଁ ଦଉଡ଼ୁଥିଲା ) ଏକାଦିକ୍ରମେ ତିନ ମାଇଲ ଧାଇଁ ଥିଲେ ଏବଂ ସେଇ ଘଟଣାରୁ ନିଜର ଶକ୍ତିଉପରେ ଆସ୍ଥା ଆସିବାରୁ ଅଭ୍ୟାସ କରିକରି ପରବର୍ତ୍ତୀକାଳରେ ବିଶ୍ୱବିଦ୍ୟାଳୟରେ ଦଉଡ଼ା ପ୍ରତିଯୋଗିତାରେ ପୁରସ୍କାର ପାଇଥିଲେ । ତୃତୀୟ ଜଣକ ଝିଅପିଲା ।

ଏସବୁ ଦୃଷ୍ଟିରୁ ଆମେ ସତର୍କ ପରାମର୍ଶ କରି ସେପଟକୁ ଯିବା-ପାଇଁ ମନଃସ୍ଥ କଲୁଁ । ଯିବାକୁ ହେଲେ କିନ୍ତୁ ପଦା ଦେଇ ଯିବାକୁ ପଡ଼ିବ । ଏତିକିବେଳେ କାଚକବାଟର ସେପଟେ ସ୍ଥାୟୀକାୟ ଜାହ୍ନ-ଆଲୁଅରେ କ୍ଷିପ୍ରଗତିରେ କେତେ ଜଣ ଉପରର ପାହାଡ଼-ପାହାଚକୁ ଆରୋହଣ କରୁଥିବାର ଦେଖାଗଲା । ଏହାପରେ ଆମେ ତିନିହେଁ ଅଧିକ ପରାମର୍ଶ ନ କରି ଗୋଟିଏ ଖଟତଳେ ଆଶ୍ରୟ ନେଲୁଁ । ବଙ୍ଗୀୟ ବନ୍ଧୁ କହିଲେ, "ନିଷ୍ଟୟ୍‌ଇ ବେଟା ପୁଲିଶ୍‌ରେ ଗୁଲି ଚାଲିବାଚ୍ଛି ଅଂଟେଭ୍ୟସ୍ ନୋଚ୍ଛେ ଆର୍ କି !" ପ୍ରାୟ ମାସଟିଏ ପରେ ମୋ ମୁହଁରୁ ପ୍ରଥମ ଓଡ଼ିଆ କଥା ବାହାରିଗଲା, "ହଁ ମ, ସେଇଆ ନୁହଁ ଆଉ କଣ !" ଏଇ ଆଳାପ ପରେ ପରେ କିନ୍ତୁ ବଙ୍ଗୀୟବନ୍ଧୁଙ୍କର ଦାନ୍ତ ଠକ୍‌ଠକ୍ କରୁଥିବାର ଶବ୍ଦ ମୋତେ ଏବଂ ମୋର (ପରି) ତାଙ୍କୁ ଶୁଣାଯାଇଥିଲା ।

ତିନ ଘଣ୍ଟା ବିତିଗଲା । ପ୍ରଭାତ ହେଲା । ତାପରେ ପଦାକୁ ଆତ୍ମପ୍ରକାଶ କରିବାର ଆଉଡ଼ଆଡ଼ପରେ ସଂଖ୍ୟାଧିକ, ସଂଖ୍ୟାନ୍ୟୂନ ହେଉଁ ହେଉଁ ସମ୍ମତ ହେବାପାଇଁ ଆଉ ଘଣ୍ଟାଏ କଟିଗଲା ।

ତାପରେ ଅନ୍ୟ ପଟରୁ ବିନିଦ୍ର ରଜନୀର ସମଭୋଗୀ ବାକି ବନ୍ଧୁମାନଙ୍କୁ ଡାକି ଯେତେବେଳେ ହୋଟେଲ୍ ଉପରକୁ ଗଲୁଁ, ସେତେବେଳେ ଶୁଣିଲୁଁ, ସର୍ବଂଟମସ୍ତ କେତୋଟି ବିଗତ ମୁହୂର୍ତ୍ତ-ଭିତରେ ହୋଟେଲପାଣ୍ଠିରୁ ଲୁଟତରାଜ ହୋଇଛି ପ୍ରାୟ ଏକ ଲକ୍ଷ ରୁପିଆ (ଭାରତୀୟ ମୁଦ୍ରାରେ ଅନ୍ତତଃ ସତକାଶ ତିରିଶ ହଜାର ଟଙ୍କା) । ସେଦିନ ଥିଲା ଶନିବାର । ପ୍ରାୟ ପ୍ରତ୍ୟେକ ଶନିବାରରେ ସେଠାରୁ ତିରିଶ ମାଇଲ ଦୂରବର୍ତ୍ତୀ ରାଜଧାନୀ ଜାକର୍ତ୍ତାରୁ ବଡ଼ ବଡ଼ ଗୃହକରିଆ ଓ ବ୍ୟବସାୟୀମାନେ ସପରିବାର ନିଜ ନିଜ ମଟରରେ ଏଠାକୁ ଆସି ସପ୍ତାହ-ଶେଷ ବିତାଇ ରବିବାର ଉପରଓଳି ଲେଉଟିଯାଆନ୍ତି । ସେ ରାତି ସେଠାରେ ଥିବା ଏକ ଜର୍ମାନ୍ ପରିବାରରୁ ଟଙ୍କା, ସୁନା ମିଶାଇ ପ୍ରାୟ କୋଡ଼ିଏ ହଜାର ରୁପିଆ ମୂଲ୍ୟ ଲୁଟ ହୋଇଥାଏ । ମଜାର କଥା, ଏଣ୍ଟ ଉଚ୍ ପରିବାରରେ ପଶି ପ୍ରାୟ କିଛି ନ ନେଇ ଡକାଏତମାନେ ଲେଉଟି ଯାଇଛନ୍ତି । ଆଲ୍ସେସିଆନ୍ଟି ଅବଶ୍ୟ ତାଙ୍କର ।

•

ସର୍ବଶେଷ ମର୍ମନ୍ତୁଦ ସମ୍ବାଦ ଆସି ପହଞ୍ଚିଲା ଆଉ ତିନି ଘଣ୍ଟା ପରେ ଯେ, ଫେରନ୍ତା ପଥରେ ଡକାଏତମାନେ ପ୍ରାୟ ଦୁଇ ମାଇଲ ଦୂରବର୍ତ୍ତୀ ଏକ କୁଲି-ନିବାସରେ ବୃଦ୍ଧାବଗିଚ୍ଚର ପାଞ୍ଚ ଜଣ ଶ୍ରମିକଙ୍କୁ ହତ୍ୟା କରି ଯାଇଛନ୍ତି । ସମସ୍ତଙ୍କ ମୁଣ୍ଡକୁ ଗୁଳିବିଦ୍ଧ କରି ଚିହ୍ନା କରି ଦିଆଯାଇଥାଏ ।

ହୋଟେଲର ନୈଶ ଅତିଥିମାନଙ୍କର ଧାଡ଼ିବନ୍ଧ, ଅତ୍ୟାଧୁନିକ ସର୍ବଶେଷ ମଡ଼େଲ୍‌ର ମୂଲ୍ୟବାନ୍ କାର୍‌ସବୁକୁ ବ୍ରେନ୍‌ଗାନ୍-ଦ୍ୱାରା ବିଧ୍ୱସ୍ତ କରି ଦିଆଯାଇଥାଏ, କାଳେ ଚଞ୍ଚଳ ଜାକର୍ତ୍ତା ବା ନିକଟତମ ପୋଲିଶ ଆଡ୍‌ଡ଼ାରେ ଖବର ପହଞ୍ଚିବ । ଯାହାହେଉ, ଅଳ୍ପ ସମୟ ପରେ କିନ୍ତୁ ଏକ ଫଉଜ ପହଞ୍ଚିଲେ । ତାଙ୍କ ପରେ, ଆମର ଖବର ନେବାପାଇଁ ଜାକର୍ତ୍ତାରୁ କେନ୍ଦ୍ର ଅଭ୍ୟର୍ଥନା ସମିତିର ଏକ ଦଳ, ଅତଃପର ସାମ୍ବାଦିକମାନେ ।

ଶୁଣିଲୁଁ, ଏ ଡକାଏତି କିଛି ମାମୁଲି ଘଟଣା ନୁହେଁ । ଏହାର ସଂଘଟକ ହେଉଛନ୍ତି, ବର୍ଷ ବର୍ଷ ଧରି ଇଣ୍ଡୋନେଶିଆ ରାଷ୍ଟ୍ର ଓ ମହାଜାତିର ଆଭ୍ୟନ୍ତରୀଣ ସାର୍ବଭୌମତ୍ୱ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ କରୁଥିବା, ପବିତ୍ର ଇସ୍‌ଲାମ୍-ଭ୍ରାନ୍ତୃତ୍ୱ ଏବଂ ଏକ ନବଜାତ ରାଜନୈତିକ ଅଭ୍ୟୁତ୍ଥାନକୁ ସଙ୍କଟାପନ୍ନ କରୁଥିବା ଏକ ସଂଗଠିତ, ସଶସ୍ତ୍ର, ସନ୍ତ୍ରାସବାଦୀ ଦଳ—"ଦାରୁଲ୍ ଇସ୍‌ଲାମ୍" ।

ତିନି ହଜାର ଦ୍ୱୀପ ଓ ଆଗ୍ନେୟଗିରି-ସମାବିଷ୍ଟ ଇଣ୍ଡୋ-ନେଶିଆର ଜନବସତିଶୂନ୍ୟ ଛୋଟ ଛୋଟ ଦୁର୍ଭେଦ୍ୟ ଅରଣ୍ୟାକୀର୍ଣ୍ଣ ଦ୍ୱୀପମାନଙ୍କରେ ଏମାନେ ରହନ୍ତି । ମୂଳ ଦ୍ୱୀପମାନଙ୍କରେ ଲୁଟତରାଜ କରି ଇନ୍ଦ୍ରଜାଲ ଭଳି ଏମାନେ ଅଦୃଶ୍ୟ ହୋଇ-ପାରନ୍ତି । ଏମାନଙ୍କ ବ୍ୟବହାର୍ଯ୍ୟ ଅସ୍ତ୍ରଶସ୍ତ୍ର ଏତେ ଆଧୁନିକ ଓ ବିଜ୍ଞାନସମ୍ମତ ଯେ, ଇଣ୍ଡୋନେଶିଆର ରାଷ୍ଟ୍ରୀୟ ବାହିନୀ ମଧ୍ୟ ସେସବୁ ପାଇ ନ ଥିବେ । ସେଦେଶର ବିଶିଷ୍ଟ ସମ୍ବାଦପତ୍ର "ମାର୍ଦେକା", "ବାଣ୍ଡୋବାଦୁଂ" ଓ "ହାଓିଆନ୍ ରୟତ୍"ରେ ଏହି ଘଟଣାଉପରେ ଯେଉଁସବୁ ଟିପ୍‌ପଣୀ ପ୍ରକାଶ ପାଇଲା, ସେଥିରୁ ପୃଥିବୀର ଅନ୍ୟତମ ପ୍ରାଚୀନ ମହାଜାତି, ପ୍ରକୃତିର ଅପୂରନ୍ତ

ସୌନ୍ଦର୍ଯ୍ୟଭରା ଓ ଆଶ୍ଚର୍ଯ୍ୟ ସୁଷମାଶାଳିମା ଏହି ଦ୍ୱୀପପୁଞ୍ଜର ବହୁ ରାଜନୈତିକ ରହସ୍ୟର ସନ୍ଧାନ ମୁଁ ଧୀରେ ଧୀରେ ପାଇଥିଲି— ସେସବୁ କ୍ରମଶଃ କହିବି ।

କିଛି ସମୟ ଇତସ୍ତତଃ ହୋଇ ଲୁଣ୍ଠିତ ଜର୍ମାନ୍ ପରିବାର- ଆଡ଼କୁ ଗଲି । ଅବଶିଷ୍ଟ ଜିନିଷପତ୍ର ବନ୍ଧାବନ୍ଧି କରି ଭଦ୍ରଲୋକଙ୍କ ସ୍ତ୍ରୀ ଜାକର୍ଟ ଫେରିବାକୁ ପ୍ରସ୍ତୁତ ହେଉଥିଲେ । ଭଦ୍ରଲୋକଟି, ଯେ କି ଜଣେ ମଧ୍ୟବୟସ୍କ ଅଧ୍ୟାପକ, ଖଣ୍ଡିଏ ଆରାମଚୌକିରେ ବସି ସୁରା ପିଉଥିଲେ ଓ ମୁଁ ଯିବାମାତ୍ରେ ମୋତେ ସୁପ୍ରଭାତ ଜଣାଇ ସୁରାରେ ଅଭ୍ୟର୍ଥନା କରିବେ କି ବିଅର୍ ପ୍ରୟୋଜନ, ସେକଥା ପଚାରିଲେ ।

ମୁଁ କେବଳ କହିଲି, “ଆପଣଙ୍କର ଅଦ୍ଭୁତ ଧୈର୍ଯ୍ୟ ।” ସେ ଟିକିଏ ଗୁମ୍ ମାରି କହିଲେ, “ହେ ମୋର ପ୍ରିୟବନ୍ଧୁ, ଆପଣ ଏବେ ବି ତରୁଣ, ବୋଧହୁଏ ଅବିବାହିତ । ଧୈର୍ଯ୍ୟ କଣ ଜାଣି ନାହାନ୍ତି ।” କିଛି ସମୟ ରହି ପୁଣି କହିଲେ, “ଧୈର୍ଯ୍ୟ ସେତିକିବେଳେ ପ୍ରମାଣିତ ହୁଏ, ଯେତେବେଳେ ଜଣେ ଅଧ୍ୟାପକ କଲେଜ ଯିବା- ପୂର୍ବରୁ ବନିତାର ବିଦାୟଚୁମ୍ବନ ଦେବାକୁ ତଳେ ଅପେକ୍ଷା କରିଥାଏ ଏବଂ ତେଣେ ତାର ସ୍ତ୍ରୀ ଉପରମହଲରେ ବସି ଅଧରରେ ଲିପଷ୍ଟିକ୍ ମଡ଼ାଇବାରେ ବ୍ୟସ୍ତ ଥାଏ ।”

ଆଉ ଅଧିକ ସହାନୁଭୂତି ଜଣାଇବାର ଚେଷ୍ଟା ନ କରି ଧୈର୍ଯ୍ୟ ସମ୍ପର୍କରେ ନୂତନ ଜ୍ଞାନ ଆହରଣ କରି ଧନ୍ୟବାଦ ଜଣାଇ ଫେରିଆସିଲି ।

# " ହେ ଆକାଶ, ହେ ମୃତ୍ତିକା "

ଦାରୁଣ ଗରମ ସମସ୍ତଙ୍କ କଳକତାରେ ହଜମ କରି ଅବଶେଷରେ ଯେଉଁ ଦିନ ପାସ୍‌ପୋର୍ଟ ପାଇଲି ଏବଂ ୧୯୫୬, ୨୬ ତାରିଖ ମେ ରାତି ଗୁଟାବେଳେ ଯେତେବେଳେ ମୋର ବନ୍ଧୁବର୍ଗ ଡାକ୍ତର ଆକୁଳାନନ୍ଦ ଷଡ଼ଙ୍ଗୀ ( ବର୍ତ୍ତମାନ ଲଣ୍ଡନରେ), ସଙ୍ଗୀତଜ୍ଞ ବସନ୍ତ ଚରଣ ପଣ୍ଡା ଓ ମୋର ବାଲ୍ୟବନ୍ଧୁ ସୁଧୀରଚନ୍ଦ୍ର ନାୟକ ଉଡ଼ାଜାହାଜ କୋମ୍ପାନୀ ଅଫିସରେ ମତେ ବିଦାୟ ଦେଇ ଗଲେ, ସେତେବେଳେ ନୈଶ ଆକାଶରେ ଆସନ୍ନ ଆଷାଢ଼ର ଆଭାସ । ଉଡ଼ାଜାହାଜ ଶୂନ୍ୟକୁ ଉଠିଲାବେଳେ ଟପ୍‌ଟପ୍ ବର୍ଷା ଆରମ୍ଭ ହେଲା । ବି. ଓ. ଏ. ସି. ର ଏକ "ସୁପର୍‌କନ୍‌ଷ୍ଟେଲେସନ୍" ଜାହାଜରେ ଆମେ ଆଠ ଜଣ ଭାରତୀୟ ପ୍ରତିନିଧି ଏକତ୍ର ଯାଉଥିଲୁ । ଭାଗ୍ୟ-କ୍ରମେ ମୋ ଆସନଟି ଠିକ୍ ଝରକାପାଖରେ ଥାଏ ଏବଂ ବିମୁଗ୍ଧ ହୋଇ ମୁଁ ପ୍ରସ୍ତ ପ୍ରସ୍ତ ମେଘର ପ୍ରଲେପତଳେ 'ସୁନ୍ଦରବନ' ଇଲାକାର ବହୁଧା ପ୍ରସାରିତ ଗଙ୍ଗାନଦୀ ଓ ପଲ୍ଲୀପ୍ରାନ୍ତରର କ୍ରମ-ଅବଲୁପ୍ତି ଦେଖୁଥାଏଁ । ସମଗ୍ର ଜାହାଜଟିରେ ପ୍ରାୟ ଶହେ ଯାତ୍ରୀ ଥିଲେ । ଉଡ଼ାଜାହାଜରେ ବୁଲିବାର ମାମୁଲି ବର୍ଣ୍ଣନା ଦେବାକୁ ମୁଁ ଯାଉ ନାହିଁ—କେବଳ ଏକ ବିପଦର ଅନୁଭୂତି ।

ଆକାଶରେ ଏତେ ମେଘ ଥାଏ !! ଝରକାକାଚ ସେପଟେ ଦିଗନ୍ତବିସ୍ତାରୀ ଅନ୍ଧକାର । ମଝିରେ ମଝିରେ ବିଦ୍ୟୁତର ଝଲକ । ସେତେବେଳେ କେହି ବୁଝି ନ ଥିଲୁ, ଆମେ କିଭଳି ଏକ ପରିସ୍ଥିତିକୁ ସାମନା କରିବାକୁ ଯାଉଛୁ ।

ଶୀତ-ତାପ-ନିୟନ୍ତ୍ରିତ ବିଶ୍ରାମକକ୍ଷ ଭିତରେ ଥାଇ, ବାହାରର ପ୍ରଳୟଙ୍କର ଝଡ଼ବାଆ ଭିତରେ ଖସି ବୁଲୁଥିଲେ ବି ତାର ଉତ୍ତାପ ବଦ୍ଧତା ଅଙ୍ଗକୁ ଲାଗୁ ନ ଥାଏ । ସମସ୍ତେ ବେଲ୍ଟ୍ ଭିଡ଼ି ବସିଥାଆନ୍ତି । ପ୍ରଥମେ ପ୍ରଥମେ ବେଶ୍ ମଜା ଲାଗୁଥାଏ । ଭାବୁଥାଏଁ, ଝଡ଼ ବର୍ଷା ଶୀଘ୍ର ଅପସରି ଯିବ—ତଳେ ନୀଳ ସମୁଦ୍ରର ପ୍ରଶାନ୍ତ ସ୍ଥିରତା ପୁଣି ଆଖିରେ ପଡ଼ିବ ।

ଝଡ଼ବେଳେ ଉଡ଼ାଜାହାଜର ଗତିସାମ୍ୟ ରକ୍ଷା କରିବା ସମ୍ଭବପର ହୁଏ ନାହିଁ । ଜାହାଜକୁ କେତେବେଳେ ମେଘମାଳାର ଊର୍ଦ୍ଧ୍ୱକୁ, କେତେବେଳେ ବା ତଳକୁ ଖସାଇଆଣିବାକୁ ପଡ଼େ । ସୁତରାଂ ଦୋଳିଖେଳରେ ସାଇଁସାଇଁ ଉପରକୁ ଉଠିଗଲେ ବା ତଳକୁ ଖସିଆସିଲେ ଯିମିତି ଅନୁଭୂତ ହୁଏ, ଠିକ୍ ସିମିତି ଲାଗୁଥିଲା । ମୋ ପାଖରେ ବସିଥିବା ବନ୍ଧୁ ନରସିଂହ ସାହୁଙ୍କୁ ପଚାରିଲି, "ତୁମର ତ ପୂର୍ବରୁ ଅଭିଜ୍ଞତା ଅଛି, ଉଡ଼ାଜାହାଜରେ ବସି ଇମିତି ଝଡ଼ରେ କେବେ ପଡ଼ିଛ ?" ସେ ଗମ୍ଭୀରଭାବରେ ନାହିଁ କଲେ, କହିଲେ,"ଇମିତି ଅଭିଜ୍ଞତା ଏଇ ପ୍ରଥମ ।"

ଏତିକବେଳେ ଜାହାଜ ତୀବ୍ର ଗତିରେ ତଳକୁ ଖସିବାକୁ ଲାଗିଲା । ଛାତିଭିତରେ ଯିମିତି ଧକ୍‌କନା ଆବାଜ । ଲକ୍ଷ୍ୟ କଲି, ପଛ ସିଟ୍‌ରେ ବସିଥିବା କେତେ ଜଣ ୟୁରୋପୀୟ କ୍ରସ୍ ଆଙ୍କିବାକୁ ଆରମ୍ଭ କରିଦେଇଛନ୍ତି । ଆଉ କେତେ ଜଣ ଜଗତର ସମସ୍ତ ଦାର୍ଶନିକ ଚିନ୍ତାଧାରା ଆଖିଡମାଦୁଇଟାରେ ଠୁଳ କରି ନିର୍ବିଷ୍ଟ-ଚିତ୍ତରେ ହୁଇସ୍କି ଭିତରେ ଡୁବିଯାଇଛନ୍ତି । ସେମାନଙ୍କ ମୁଖମଣ୍ଡଳରେ ଇମିତି ଭାବ ଯେ, ଯଦି ମହାଶୂନ୍ୟରୁ ଖସି ଜାହାଜଟି ସମୁଦ୍ରଭିତରେ ଲୀନ ହେବାକୁ ବସେ, ତେବେ ସେମାନେ ମହାସମୁଦ୍ରଟାକୁ ବି ନିର୍ବିକାରଚିତ୍ତରେ ଚଳୁ କରିଦେବେ !

ଜାହାଜର ବିସ୍ମିତ ଚେଖାଉପରେ ଏତିକିବେଳେ ଗୋଟିଏ ବିଦ୍ୟୁତ୍ ଧକ୍କା ଖାଇଲା ଭଳି ଲାଗିଲା । ଗୋଟାଏ କଣ ଶବ୍ଦ । ପୁଣି ଜାହାଜ ପ୍ରିଷଣ ବେଗରେ ତଳକୁ ଖସିବାକୁ ଲାଗିଲା । ତଥାପି କାହିଁ—ତଳେ ସମୁଦ୍ର କି ସ୍ଥଳଭାଗ କିଛି ଦେଖା ଯାଉନି । ଜମାଟ ମେଘ ତୂଳା ଭଳି ଭାସି ହୋଇ ଯାଉଥାଏ । ଏଥର ହୋଷ୍ଟେସ୍‌ମାନଙ୍କ ମୁହଁରେ ଆତଙ୍କର ସଙ୍କେତ । ଜଣକୁ ପଚାରିଲି, "ବ୍ୟାପାର କଣ ?" ତାଙ୍କ କପାଳରେ ଚିନ୍ତାର ରେଖା—ଗୋଟିଏ ଟ୍ରାଜିକ୍ ଉପନ୍ୟାସର ଶେଷ ଲାଇନ୍ ଭଳି । ସେ ଅନ୍ୟମନସ୍କ-ଭାବରେ କହିଲେ,"ଅବସ୍ଥା କିଛି ଭଲ ନୁହେଁ । ପାଣିପାଗ ବିଶ୍ୱାସ-ଘାତକତା କରିଛି ।" ଏଥର ମୋର ଆତଙ୍କିତ ହେବାର ଯଥେଷ୍ଟ କାରଣ ଥିଲା ନିଶ୍ଚୟ । ମୁଁ ତାଙ୍କ ମୁହଁକୁ ବଲବଲ କରି ଚାହିଁରହି ଥିବାର ଦେଖି ସିନେମାର ଦୃଶ୍ୟପଟ ଉଜଳାଇଲା ଭଳି ସେ କିନ୍ତୁ ଚଞ୍ଚଳତା ଭାବ ବଦଳାଇଦେଲେ, "ଓଃ, ଚିନ୍ତା ନାହିଁ । କଣ ଦରକାର—ବ୍ରାଣ୍ଡି ? ହୁଇସ୍କି ? କାନାଡ଼ିଆନ୍ ? ଫ୍ରେଞ୍ଚ୍ ?"

ମୁଁ ଆଖି ଫେରାଇନେଇ କହିଲି, "ନାହିଁ, ଧନ୍ୟବାଦ......ଓଃ, ଦୁଃଖିତ, ଲଜେନ୍ସଟିଏ ଦିଅନ୍ତୁ ।"

ଆମ ପ୍ରତିନିଧି ଦଳର ଦୁଇ ଜଣ ଓ ଅନ୍ୟ ଯାତ୍ରୀ କେତେ ଜଣ ସେତେବେଳେ ମୁହଁ ପାଖରେ ରବର ଥଳି ଧରି ଏକାଗ୍ରଚିତ୍ତରେ ତହିଁରେ ବାନ୍ତି ସଞ୍ଚୟ କରୁଥିଲେ । ସଭିଙ୍କ ଆଖିରେ ଉଦ୍‌ବେଗର ଛାୟା । ମୁଷ୍ଟିମେୟ କେତେଜଣ ବ୍ୟକ୍ତି ସିଟ୍‌ତଳର ଲାଇଫ୍‌ବେଲ୍ଟ ପରୀକ୍ଷା କରୁଥିଲେ । ଯେଉଁମାନଙ୍କ ସିଟ୍ ପାଖରେ Emergency Exit ପାଇଁ ଦ୍ୱାର ଥିଲା, ସେମାନେ ତହିଁରେ ହାତ ପକାଇ ବସି-ଥିଲେ । ଝଞ୍ଜାସଙ୍କୁଳ ମହାଶୂନ୍ୟଭିତରେ ପୃଥିବୀର ବିଭିନ୍ନ ପ୍ରାନ୍ତର

ଶହେଟି ହତଚେତନ ଆତ୍ମା ସେଉଁ ଅଭିଜ୍ଞତା ବର୍ତ୍ତମାନ ଅର୍ଜନ କରିବେ ତାକୁ ଲିପିବଦ୍ଧ କରିବାର ଅବକାଶ ଆଉ ପାଇବେ ନାହିଁ । କଣ ଘଟିବାକୁ ଯାଉଛି, ସେକଥା ଜାଣିବାକୁ ମୋର ଆଉ ବାକି ରହିଲା ନାହିଁ । ଚାଳକଙ୍କ କାମରାଭିତରୁ ଲାଉଡ଼୍ସ୍ପିକର୍‌ରେ ଘୋଷଣା ହେଲା, "ଆମେ ଏକ ସାଂଘାତିକ ଝଡ଼ ସହିତ ଲଢ଼େଇ କରୁଛୁଁ । ନିରାପତ୍ତାପାଇଁ ଆମେ ଅବଶ୍ୟ ସମସ୍ତ ଚେଷ୍ଟା କରୁଛୁଁ ।"

କାହାଭିତରେ କେତେ ଚିନ୍ତା ! ତଳେ ସମୁଦ୍ର । ଏଇ ସମୁଦ୍ରର ବହୁଦୂର ଏକ ନଗଣ୍ୟ ପ୍ରାନ୍ତରେ ମୋର ବାପା, ମାଆ—ଦୂର ଇଂଲଣ୍ଡ ବା ସୁଇଜରଲଣ୍ଡରେ ମୋର ବଡ଼ଭାଇ ! ମୋର ବନ୍ଧୁ ନରସିଂହ ରାଓ ଆସିବାବେଳେ ତାଙ୍କ ପ୍ରିୟତମାଙ୍କ ମନରେ କଷ୍ଟ ଦେଇ ଆସିଥିଲେ । ତାଙ୍କ ମୁହଁରେ ଅନୁତାପର ଉତ୍ତାପ ।

ଅନ୍ୟପାଖ ସିଟ୍‌ରେ ଜଣେ ଷଷ୍ଟିପର ବୃଦ୍ଧା—ବ୍ୟାଙ୍କକ୍‌ରେ ତାଙ୍କ ଅସୁସ୍ଥ ସ୍ୱାମୀର ପରିଚର୍ଯ୍ୟାପାଇଁ ଯାଉଛନ୍ତି । ଗୋଟିଏ ନବବିବାହିତ ଫରାସୀ ଦମ୍ପତି—ମାଳୟ ସମୁଦ୍ର-ଉପକୂଳକୁ ଶୁଭରାତ୍ରିପାଇଁ ଯାଉଛନ୍ତି । ଉଭୟଙ୍କ ଆଖିରେ ବହୁ ଅଲବ୍ଧ ରୋମାଞ୍ଚର ସ୍ୱପ୍ନ,ଉପରେ ଆସନ୍ନ ଯବନିକାର କି ବିଭୀଷିକା ! ଆହୁରି କେତେ କିଏ, କେତେ ଆଶା ଆଶଙ୍କାର ପୁଞ୍ଜ, ଗୋଟିଏ ଗୋଟିଏ ମଣିଷ!

କିନ୍ତୁ ସମସ୍ତେ ଖୁବ୍ ଚିନ୍ତାବିଷ୍ଟ ହୋଇପଡ଼ିଥିଲେ । ଯେତେ-ବେଳେ ସଚେତନ ହେଲି, ଦେଖିଲି, ଝରକାବାହାରର ମେଘ ତାର

ପ୍ରଳୟ ଅବତାର ଶାନ୍ତ କର ମସୃଣ ମଖମଲ ଭଳି ଜାହାଜର ଅଙ୍ଗକୁ ଘୋଡ଼ିନେଇଯାଉଛି । ଭିତରୁ ଘୋଷଣା ହେଲା, "ଈଶ୍ୱରଙ୍କୁ ଧନ୍ୟବାଦ ! ଆମେ ଆଉ କେତେ ମିନିଟଭିତରେ ଥାଇଲାଣ୍ଡର ରାଜଧାନୀ ବ୍ୟାଙ୍କକ୍ ସହରରେ ଅବତରଣ କରୁଛୁଁ ।"

ସମସ୍ତେ ମୁଣ୍ଡ ସିଧାକରି ବସିଲେଣି । କିଏବା ସିଗାରେଟ ଖଣ୍ଡେ ଖଣ୍ଡେ ଟାଣି ଚଲବୁଲ କରୁଛନ୍ତି । ମୁଁ ଝରକାବାହାରୁ ତଳର ସମୁଦ୍ରକୁ ଚାହିଁ ଏକ ବଦ୍ଧୁ ପରଚକ ହସ ହସିଲି ।


Digitized by srujan ka@gmail.com

# ରୂପକଥାର ଚରାଭୂଇଁ

କ୍ଷୀର, ନୀର ସମୁଦ୍ର ପାରହେଲେ ଏକ ସୁନ୍ଦର ମୋତି-ମାଣିକ୍ୟର ଦେଶ । ସେରାଜ୍ୟରେ ସୂର୍ଯ୍ୟଦହରୁ ଝରିପଡ଼େ ବୈଦୁର୍ଯ୍ୟର ରଶ୍ମି । ସରୋବରରେ ଫୁଟେ ସୁନାର ପଦ୍ମ ।

ଇମିତି ଯେଉଁ ରାଜ୍ୟ, ସେଠାରେ ଥରେ ପହଞ୍ଚିଲା ଏକ କୃଷ୍ଣକାୟ ବୁଢ଼ୀ ଅସୁରୁଣୀ । ହାୟ ରେ ! ତାର ଗରମ ନିଶ୍ୱାସରେ ତରଳିଗଲା ସେଦେଶର ଅସୁମାର ଲାବଣ୍ୟ ଝରଣା, ନଈର ନୀର ଗରଳ ପାଲଟିଗଲା, ଆଉ ଆଖିନିମିଷକେ ସାରା ରାଜ୍ୟଟା ପାଲଟିଗଲା ଧୂ-ଧୂ ମଶାଣି !

ରୂପକଥାର ଏଇ କାଳ୍ପନିକ ଦ୍ୱୀପକୁ ଯଦି କିଛି ବାସ୍ତବ ରୂପ ଦିଆଯାଇପାରେ, ତେବେ ସେ ରୂପ ନେବ ଇଣ୍ଡୋନେଶିଆ । ଏଇସବୁ ପ୍ରାଚୀନ ଓଡ଼ିଆ ରୂପକଥାର ଜନ୍ମ ମଧ୍ୟ ଜାଭା, ବାଲି, ସୁମାତ୍ରା ପ୍ରଭୃତି । କଳିଙ୍ଗ ସହିତ ସେସବୁ ଦ୍ୱୀପର ଐତିହାସିକ ସମ୍ପର୍କ ଚିନ୍ତା କଲେ ତାହା ଅସଙ୍ଗତ ବୋଧ ହେବ ନାହିଁ ।

ଏଇ କାହାଣୀ-ଅତ୍ୟାଚାରର କରୁଣ କାହାଣୀ କିନ୍ତୁ ମିଛ ନୁହେଁ ।

ସମଗ୍ର ସାମ୍ରାଜ୍ୟବାଦୀ ଶୋଷଣର ଦୁରନ୍ତ ଇତିହାସକୁ ପର୍ଯ୍ୟାଲୋଚନା କଲେ ସବୁଠୁଁ ଘୃଣ୍ୟ ଓ ଜଘନ୍ୟ ରୂପ ନେଇ ସ୍ପଷ୍ଟ ହୋଇଉଠିବ ଇଣ୍ଡୋନେଶିଆରେ ଡଚ୍ ସାମ୍ରାଜ୍ୟବାଦ "Asia and Western Dominance" ଗ୍ରନ୍ଥରେ ଶ୍ରୀଯୁକ୍ତ

ଫାନକୁର୍ ଯଥାର୍ଥରେ ଲେଖିଛନ୍ତି, "ୟୁରୋପର ଜାତିଗୁଡ଼ିକ-ଭିତରୁ ଡଚ୍‌ମାନେହିଁ ଏକମାତ୍ର ଜାତି, ଯେଉଁମାନେ କି ସମସ୍ତ ମାନବିକ ଦାୟିତ୍ୱ ପରିହାର କରି ଏକ ବ୍ୟାପକ ଜାତିକୁ କୁଲି-ଶିବିରରେ ପରିଣତ କରିଦେଲେ।.........ସେମାନେ ଯେଉଁଠି ଶାସନ କରନ୍ତି, ଶୋଷଣହିଁ ହୋଇଛି ସେମାନଙ୍କର ଏକମାତ୍ର ଅବଲମ୍ବନ। ଶାସନଭୁକ୍ତ ଲୋକମାନଙ୍କର ମଙ୍ଗଳପାଇଁ କୌଣସି ଦାୟିତ୍ୱ ସେମାନେ ସ୍ୱୀକାର କରି ନାହାନ୍ତି। ପରବର୍ତ୍ତୀ ଶହେ ବର୍ଷ-ଭିତରେ ସେମାନେ ଯଦି ସେମାନଙ୍କ ମତ ବଦଳାଇବାକୁ ବାଧ୍ୟ ହୋଇଥାନ୍ତି, ତେବେ ତାହା କୌଣସି ଉଦାର ମନୋଭାବ-ବଶତଃ ନୁହେଁ— ହଲାଣ୍ଡ ଓ ଇଣ୍ଡୋନେଶିଆଆଦି ବାହାର ଦେଶ-ମାନଙ୍କର ପରିବର୍ତ୍ତିତ ସ୍ରୋତର ଜୋର୍‌ରେ।"

ଗୋଟିଏ ମହାଜାତିର ସାଂସ୍କୃତିକ ମେରୁଦଣ୍ଡକୁ ଚୂନା କରିଦେଇ, ରାଜନୈତିକ ବିଭେଦର ବିଷବୀଜ ବିଞ୍ଚିଦେଇ ଯେତେବେଳେ ପରାଭୂତ ଡଚ୍-ଜାତି ନିଜର ତମ୍ବୁ ଗୋଟାଇବାକୁ ବାଧ୍ୟ ହେଲେ, ସେତେବେଳେ ହଲାଣ୍ଡଠୁଁ ପ୍ରାୟ ୮୦ ଗୁଣ ବଡ଼ ସମଗ୍ର ଇଣ୍ଡୋନେଶିଆରେ ମାତ୍ର ଗୋଟିଏ ବିଶ୍ୱବିଦ୍ୟାଳୟ, ଯେଉଁଥିରେ କି ସମସ୍ତ ଅଧ୍ୟାପକ ଥିଲେ ଜାତିରେ ଡଚ୍, ଏବଂ ଛାତ୍ର ସଂଖ୍ୟାର ଶତକଡ଼ା ୫୦ ଡଚ୍, ଶତକଡ଼ା ୩୮ ଚୀନା ଓ ବାକି ୧୨ ଭାଗ ମାତ୍ର ଇଣ୍ଡୋନେଶୀୟ।ସାଢ଼େ ସାତଲକ୍ଷ ବର୍ଗମାଇଲ ପରିମିତ ପ୍ରାୟ ୮ କୋଟି ଜନସଂଖ୍ୟାବିଶିଷ୍ଟ ପୃଥିବୀର ଏଇ ଷଷ୍ଠ ବୃହତ୍ତମ (ଜନସଂଖ୍ୟାନୁସାରେ) ଦେଶର ସମସ୍ତ ଖଣି, କାରଖାନା ଓ ଶିଳ୍ପ ବିଦେଶୀମାନଙ୍କର କରାୟତ୍ତ। ଡଚ୍‌ମାନେ ସମସ୍ତ ସଂପଦ ସେଠାରୁ ନେଇଯାଇଥିଲେ— ଦେଇଯାଇଥିଲେ ଦୁର୍ଭିକ୍ଷ, ଅଶିକ୍ଷା, ରୋଗ ଓ ବିଭେଦ।

ଜାଭା, ସୁମାତ୍ରା, ବାଲି, ସାବେଲାନ୍, ବୋର୍ଣ୍ଣିଓ, ଏଇ ମୁଖ୍ୟ ଦ୍ୱୀପମାନଙ୍କ ଭିତରେ ପରସ୍ପର କନ୍ଦଳ ସୃଷ୍ଟି କରିବାପାଇଁ ଯେତେ ଯାହା ଆବଶ୍ୟକ, ସେସବୁର ସଂଗଠିତ ଷଡ଼ଯନ୍ତ୍ର କରିବାଲାଗି ଡଚ୍ ସରକାର କିଛିମାତ୍ର ତ୍ରୁଟି କରି ନ ଥିଲେ । କେବଳ ସୁମାତ୍ରା ଦ୍ୱୀପଟିହିଁ ଆୟତନରେ ବ୍ରିଟେନର ଦୁଇ ଗୁଣ ଏବଂ ହଲଣ୍ଡର ଆଠ ଗୁଣ । ବିପୁଳ ପ୍ରାକୃତିକ ଐଶ୍ୱର୍ଯ୍ୟରେ ସୁମାତ୍ରା ସମଗ୍ର ପୃଥିବୀରେ ଅଦ୍ୱିତୀୟ । ଡଚ୍ ସରକାର ଯେତେ ପାରିଥିଲେ ସୁମାତ୍ରାରୁ ସମ୍ପଦ ଆହରଣ କରିଥିଲେ । ତାହା ସଙ୍ଗେ ସଙ୍ଗେ ଏପରି ବ୍ୟବସ୍ଥା ମଧ୍ୟ କରିଥିଲେ, ଯେପରି ଅନ୍ୟ ଯେକୌଣସି ଅନୁଷ୍ଠାନ ପକ୍ଷରେ ସୁମାତ୍ରାର ଗିରିବନାନୀସଙ୍କୁଳ ଦୁର୍ଭେଦ୍ୟ ଅନ୍ତସ୍ଥଳକୁ ପ୍ରବେଶ କରିବା ଦୁଃସାଧ୍ୟ ହୋଇପଡ଼ିବ । ଏତେ ବଡ଼ଟି ସୁମାତ୍ରା, ଅଥଚ ତାର ଲୋକସଂଖ୍ୟା ଲଣ୍ଡନ ସହରଠୁଁ ବେଶୀ ନୁହେଁ ।

ନୂତନ କରି ସୁମାତ୍ରାରେ ତେଲ ବ୍ୟବସାୟ ଆରମ୍ଭ କରିଥିବା ଜଣେ ବଡ଼ ବ୍ୟବସାୟୀଙ୍କ ସୁଅ ସହିତ ମାଲଙ୍ଗ ସହରର ଏକ କ୍ୟାଣ୍ଟିନ୍‌ରେ ପରିଚୟ ହେଲା । ଭାରି ମଜାର ମଣିଷ ସେ—ନାମ ସୁପ୍ରାପ୍ତୋ । ତାଙ୍କ ଦୁଇ କଡ଼ରେ ଦୁଇ ଜଣ ମହିଳା ବସିଥିଲେ । ପରିଚୟ ହେବାପରେ ମୋତେ ସେ ପଚାରିଲେ, “ଏ ମହିଳା ଦୁଇ ଜଣ ମୋର କିଏ ହୋଇଥିବେ ବୋଲି ଅନୁମାନ କରୁଛନ୍ତି ?”ଏପରି ପ୍ରଶ୍ନ ଶୁଣି ମୁଁ ବଡ଼ ଅଡ଼ୁଆରେ ପଡ଼ିଲି— ଯାହାଙ୍କୁ ସ୍ତ୍ରୀ ବୋଲି କହିବି, ସେ ଯଦି ଭଉଣୀ ହୋଇଥିବେ ! ମୋତେ କିଛିକ୍ଷଣ ଇତସ୍ତତଃ ହେବାର ଦେଖି ସୁପ୍ରାପ୍ତୋ ହସି ହସି କହିଲେ, “ଏ ଦୁହେଁ ଯାକ ଏକା ନୌକାର ଯାତ୍ରୀ······ଏବଂ ନୌକାଟି ହେଉଛି ମୁଁ ।” ତାଙ୍କର ହସ ଉଚ୍ଚରୁ ଉଚ୍ଚତର ହେଲା ।

ଜାଣିଲି, ଉଭୟେ ତାଙ୍କର ସ୍ତ୍ରୀ । ପ୍ରଥମାଙ୍କୁ ବିବାହ କରିବାର କେତେ ମାସପରେ ମାଲଙ୍ଗ ସହରରେ କର୍ପୋରେସନ୍ ନିର୍ବାଚନ ହେଲା । ସୁଦିପ୍ତୋଙ୍କ ବାପାଙ୍କୁ ଅନ୍ୟ ଜଣେ ଶକ୍ତିଶାଳୀ ପ୍ରତିଦ୍ୱନ୍ଦ୍ୱୀଙ୍କର ସମ୍ମୁଖୀନ ହେବାକୁ ପଡ଼ିଲା । ଉଭୟେ ଦୁଇଟି ସ୍ଥାନୀୟ ଧର୍ମନୈତିକ ଦଳର ପ୍ରାର୍ଥୀ । ଉଭୟଙ୍କ ଭିତରେ ଦର କଷାକଷି ପରେ ସ୍ଥିର ହେଲା ଯେ, ସୁଦିପ୍ତୋ ପିତୃପ୍ରତିଦ୍ୱନ୍ଦ୍ୱୀଙ୍କର ସୁନ୍ଦରୀ କନ୍ୟାଟିକୁ ବିବାହ କରିବେ ଏବଂ କନ୍ୟାଦାୟରୁ ମୁକ୍ତି ପାଉଥିବା ଯୋଗୁଁ ପ୍ରତିଦ୍ୱନ୍ଦ୍ୱୀ ତାଙ୍କର ପ୍ରାର୍ଥିପଦ ପ୍ରତ୍ୟାହାର କରିନେବେ ।

ଯେଉଁ ଇଣ୍ଡୋନେଶିଆର ନାରୀପ୍ରଗତି ମୋତେ ଚମତ୍କୃତ କରିଥିଲା, ସେଠି ପୁଣି ଏ ଘଟଣା ! ମୁଁ ବିସ୍ମିତ ହୋଇପଡ଼ିଲି । କ୍ରମଶଃ ଜାଣିଲି, ସଂସ୍କୃତି ଓ ସଭ୍ୟତା କିପରି ବ୍ୟାପକ ଓ ପରସ୍ପର-ବିରୋଧୀ ହୋଇ ଆତ୍ମପ୍ରକାଶ କରିପାରେ, ତାର ଜ୍ୱଳନ୍ତ ଉଦାହରଣ ଇଣ୍ଡୋନେଶିଆ । ସେକଥା ପରେ ଆଲୋଚନା କରିବି ।

ସୁଦିପ୍ତୋ ମୋତେ କହିଲେ, ଆଜାଦି ହାସଲପରେ ଏବେ ଜାତୀୟକରଣ ଦିଗରେ ଏବଂ ଜାତୀୟ ପୁଞ୍ଜିକୁ ସମ୍ପ୍ରସାରିତ କରିବା ଦିଗରେ ସେମାନେ ଉନ୍ମୁଖ ହୋଇପଡ଼ିଛନ୍ତି । ସୁମାତ୍ରାର ଏକ ତେଲ କୋମ୍ପାନୀର ମାଲିକାନା ସହ ତାଙ୍କର ପିତା ସଂପୃକ୍ତ । କିନ୍ତୁ ତାଙ୍କର କେତେକ ବାତା ଯେତେବେଳେ ପ୍ରଥମେ ଏ ଢଙ୍ଗରେ ଉଦ୍ୟମ କରିଥିଲେ ଓ ସୁମାତ୍ରାର ଅଭ୍ୟନ୍ତରକୁ ଯାଇ ଏଥିପାଇଁ ଚେଷ୍ଟା କରିଥିଲେ, ସେତେବେଳେ ଅନ୍ୟ ସାତଜଣ ବନ୍ଧୁଙ୍କ ସହ ତାଙ୍କୁ ସୁମାତ୍ରାର ଏକ ସଂଗୁପ୍ତ ଅଞ୍ଚଳରେ କୌଣସି ଅଜ୍ଞାତନାମା ଶତ୍ରୁ ହତ୍ୟା କରିଥିଲା । ଡଚ୍ ସରକାର ଏହି ହତ୍ୟାକାଣ୍ଡ ଓ ଅନୁରୂପ ବହୁ ହତ୍ୟାକାଣ୍ଡ ସମ୍ପର୍କରେ ପୂରାପୂରି ଚୁପ୍‌ଚାପ୍ ରହିଯାଇଥିଲେ ।

ବ୍ୟବସାୟଗତ ପ୍ରତିଦ୍ୱନ୍ଦ୍ୱିତା ନେଇ ବହୁ ଡଚ୍ ବଣିକ ବହୁଭାବରେ ଅଭିଯୁକ୍ତ ହେଉଥିଲେ ମଧ୍ୟ ସେମାନଙ୍କପ୍ରତି ଆଇନ ବିପୁଳ ବଦାନ୍ୟ ଥିଲା । ଭାରତୀୟ ପେନାଲ୍ କୋର୍ଡ଼ର ଅଧୁନାଲୁପ୍ତ Penal Servitude ପରି ଡଚ୍‌ମାନଙ୍କ ପାଇଁ ଲିଖିତ ଏବଂ ଅଲିଖିତ ସ୍ୱତନ୍ତ୍ର ନିୟମ କାନୁନ ଖଞ୍ଜିଥିଲା । ଭାଷାଗତ ବିଭାଗ, ଅନୁବିଭାଗକୁ ଜବରଦସ୍ତ ଜିଆଇ ରଖାଯାଇଥିଲା ଏବଂ ଏକ ସାର୍ବଜନୀନ ଜାତୀୟ ଭାଷାପ୍ରଚଳନର ଉଦ୍ୟମକୁ ପ୍ରତିହତ କରାଯାଇଥିଲା । ପ୍ରାଗୈତିହାସିକ ଯୁଗର କୃଷି ବ୍ୟବସ୍ଥା ଏବଂ ଆଦିମ ଯନ୍ତ୍ରପାତିଭିତରେ ଜାତିର କୃଷି ଶିଳ୍ପକୁ ପଙ୍ଗୁ କରି ରଖା-ଯାଇଥିଲା ।

ଡଚ୍ ପୁଞ୍ଜିପତି ମିତ୍ରତା ସୂତ୍ରରେ ବ୍ରିଟିଶ ଓ ଆମେରିକାନ୍ ପୁଞ୍ଜି ମଧ୍ୟ ଯଥାସମୟରେ ସାମ୍ରାଜ୍ୟବାଦୀ ସୌହାର୍ଦ୍ଦ୍ୟର ଆଇନ ଅନୁସାରେ ଇଣ୍ଡୋନେଶିଆର ଅର୍ଥନୀତିଉପରେ ଅକ୍ଟୋପାସ୍ ବାହୁ ବିସ୍ତାର କଲେ ।

ଶତାବ୍ଦୀ ଶତାବ୍ଦୀ ଧରି ଏଇ ସଂଜ୍ଞାହତା ଦ୍ୱୀପକନ୍ୟାର ଅଫୁରନ୍ତ ଗନ୍ତାଘରରୁ ମିଳିତ ସାମ୍ରାଜ୍ୟବାଦୀ କମ୍ପାନୀ କ୍ରମାଗତ ଲୁଣ୍ଠନରାଜ ଚଳାଇଥିଲେ ।

ଡଚ୍ ନାଗପାଶକୁ ଛିନ୍ନ କରିବାପାଇଁ ଇଣ୍ଡୋନେଶିଆର ଜାତୀୟ ସଂଗ୍ରାମ ବହୁ ସ୍ତର ଦେଇ ଗତି କରିଆସିଛି । ଅକଥନୀୟ ଦମନ ଅତ୍ୟାଚାର ବିରୁଦ୍ଧରେ କେତେବେଳେ କୂଟନୈତିକ ଅସ୍ତ୍ର-ଦ୍ୱାରା, କେତେବେଳେ ବା ସଶସ୍ତ୍ର ବିଦ୍ରୋହ ଘୋଷଣା ଦ୍ୱାରା ଏ ଦେଶର ଅପରାଜେୟ ଜନତା ପରିଶେଷରେ ଡଚ୍ ସାମ୍ରାଜ୍ୟବାଦକୁ ନିକାଲିଦେବାକୁ ସମ୍ପୂର୍ଣ୍ଣ କ୍ଷମ ହୋଇଥିଲେ ।

ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଦେଶର ବିଭିନ୍ନ ଅଞ୍ଚଳରେ ଡଚ୍ ବିରୋଧୀ ମନୋଭାବ ତୀବ୍ର ହୋଇଉଠିଥିଲା ଏବଂ ବିଭିନ୍ନ ରାଜନୈତିକ ସଂସ୍ଥାର ନେତୃବର୍ଗ ହୃଦୟଙ୍ଗମ କଲେ ଯେ, ଏଥିର ସର୍ବଦଳୀୟ ଐକ୍ୟବଦ୍ଧ ପ୍ରୟାସ ନ ହେଲେ ଆନ୍ଦୋଳନ ମହାଜାତୀୟ ଚରିତ୍ରର ଅଧିକାରୀ ହୋଇପାରିବ ନାହିଁ । ୧୯୧୬ ମସିହାରେ ଜାକର୍ତ୍ତା ସହରରେ ସବୁ ଅଞ୍ଚଳର ପ୍ରତିନିଧିଙ୍କୁ ନେଇ ପ୍ରଥମ ମହାଜାତୀୟ ସମ୍ମିଳନୀ ଅନୁଷ୍ଠିତ ହେଲା । ଧର୍ମବିଶ୍ୱାସକୁ ଭିତ୍ତି କରି ଆଜି ମଧ୍ୟ ଇଣ୍ଡୋନେଶିଆରେ ଦଳର ଅନ୍ତ ନାହିଁ— ସେତେବେଳେ ତ ଆହୁରି ପ୍ରଚୁର ଥିଲା । କିନ୍ତୁ ୧୯୧୬ ର ସମ୍ମିଳନୀ ପ୍ରଥମ କରି ଧର୍ମନିରପେକ୍ଷ ରାଜନୈତିକ ଚେତନା ଜାଗ୍ରତ କରିବାରେ ଏକ ସ୍ପଷ୍ଟ ପଦକ୍ଷେପ ହୋଇଥିଲା । ୧୯୧୮ ରେ ପ୍ରଥମେ ଏକ କାଗଜପତ୍ରୀୟ ବିଧାନସଭା ଗଢ଼ାଗଲା । ୧୯୨୦ ରେ ମାର୍କସ୍-ବାଦରେ ବିଶ୍ୱାସ କରୁଥିବା ବ୍ୟକ୍ତିମାନଙ୍କର ଏକ ସମ୍ମିଳନୀ ହୋଇ ସାମ୍ୟବାଦୀ ଦଳ ଗଠିତ ହେଲା । କିନ୍ତୁ ୧୯୨୭ ମସିହାରେ ଡଚ୍ ସରକାର ସଶସ୍ତ୍ର ମିଲିଟାରୀ ପ୍ରୟୋଗ କରି ସାମ୍ୟବାଦୀମାନଙ୍କୁ ଯେପରି ଦମନ କରିଥିଲେ, ନୃଶଂସତାର ଇତିହାସରେ ତାର ପଟାନ୍ତର କ୍ୱଚିତ୍ ମିଳିବ । ଏହି ଦମନଫଳରେ ସମସ୍ତ ଦେଶ-ପ୍ରେମୀ ଦଳ ଓ ବ୍ୟକ୍ତିବିଶେଷ ଡଚ୍‌ବିରୁଦ୍ଧରେ ବ୍ୟାପକ ଘୃଣା ପ୍ରକାଶ କଲେ ଏବଂ ଏଇ ସମୁଦ୍ରଘେରା ଦ୍ୱୀପପୁଞ୍ଜର ଆକାଶରେ ଯେଉଁ କାଳଝଡ଼ର ସଙ୍କେତ ଦେଖାଦେଲା, ଭବିଷ୍ୟତର କୋଡ଼ିଏ ବର୍ଷଭିତରେ ତାହା ସାମ୍ରାଜ୍ୟବାଦୀ ଶିବିରକୁ ଛିନ୍ନବିଚ୍ଛିନ୍ନ କରି ଭାରତ ମହାସାଗରଭିତରକୁ ନିକ୍ଷେପ କଲା ।

ଏତିକବେଳେ ବେଲ୍‌ଜିୟମର ରାଜଧାନୀ ବ୍ରୁସେଲ୍‌ସ୍ ମହା-ନଗରୀରେ ଆନ୍ତର୍ଜାତିକ ସାମ୍ରାଜ୍ୟବାଦ-ବିରୋଧୀ ସଭା ଅନୁଷ୍ଠିତ

ହେଲା । ଇଣ୍ଡୋନେଶିଆର ପ୍ରତିନିଧି ଦଳ ଏହି ସମ୍ମିଳନୀରେ ପ୍ରଥମେ ଆନ୍ତର୍ଜାତିକ କ୍ଷେତ୍ରରେ ସେମାନଙ୍କ ସ୍ୱାଧୀନତାର ଦାବି ଘୋଷଣା କଲେ । (ଭାରତରୁ ନେହେରୁଙ୍କ ଓ ଶ୍ରୀଯୁକ୍ତ ଗାନ୍ଧିଙ୍କର ଯୋଗ ଦେଇଥିଲେ ।) ସୁକର୍ଣ୍ଣଙ୍କ ନେତୃତ୍ୱରେ ଏହି ବର୍ଷ (୧୯୨୭) ଜୁଲାଇ ମାସରେ "ଇଣ୍ଡୋନେଶିଆନ୍ ନ୍ୟାସନାଲିଷ୍ଟ ପାର୍ଟି" ଗଠିତ ହେଲା । ସୁକର୍ଣ୍ଣଙ୍କ ଆଶ୍ଚର୍ଯ୍ୟ ବାଗ୍ମିତା * ଏବଂ ପ୍ରଗତିଶୀଳ ଜାତୀୟବାଦୀମାନଙ୍କର ଶକ୍ତି ଶପଥ ସହସ୍ର ଦ୍ୱୀପପୁଞ୍ଜର କୋଟି କୋଟି ସ୍ୱୟଂସିଦ୍ଧ ସୈନିକଙ୍କ କଣ୍ଠରେ ଗୋଟିଏ ସ୍ଲୋଗାନ୍‌ର ସ୍ୱର ଉଠାଇଲା—ପୂର୍ଣ୍ଣ ସ୍ୱାଧୀନ ଇଣ୍ଡୋନେଶୀୟ ରାଷ୍ଟ୍ରପାଇଁ ସାଲିସବିହୀନ ସଂଗ୍ରାମ । ଏହିଭଳି ଏକ ସ୍ପଷ୍ଟ ପ୍ରସ୍ତାବ ଗୃହୀତ ହେବା ଯୋଗୁ ସାମ୍ୟବାଦୀ ଦଳ ସହ ସଂଗ୍ରାମୀ ଐକ୍ୟର ପଥ ମଧ୍ୟ ପ୍ରଶସ୍ତ ହୋଇଗଲା ।

ମାତ୍ର କିଛି ଦିନପରେ ନ୍ୟାସନାଲିଷ୍ଟ ପାର୍ଟି ବେଆଇନ ଘୋଷିତ ହେଲା ଏବଂ ସୁକର୍ଣ୍ଣଙ୍କ ସହ ଅନ୍ୟ ସାତ ଜଣ ନେତା ବନ୍ଦୀ ହେଲେ । ତହୁଁ ଦଳର ଅଧିକାଂଶ ସଭ୍ୟ ମିଶି ଅନ୍ୟ ଏକ ନାମରେ ଦଳ ଗଠନ କଲେ "ଇଣ୍ଡୋନେଶିଆନ୍ ପାର୍ଟି" । ୧୯୩୩ ରେ ମୁକ୍ତି ଲାଭ କରି ସୁକର୍ଣ୍ଣ ମଧ୍ୟ ଏହି ଦଳରେ ଯୋଗ ଦେଲେ ।

* Even sober-minded American journalists, who do not understand a word of his speeches, agree that he has a remarkable ability for carrying an audience with him, for making it laugh, cry and pray"—*The Indonesian Story, by Charles Wolf Jr.*

ଅଳ୍ପ ଦିନଭିତରେ କୋଡ଼ିଏ ହଜାର ସକ୍ରିୟ ସଭ୍ୟଙ୍କୁ ନେଇ ସମଗ୍ର ଇଣ୍ଡୋନେଶିଆ ବ୍ୟାପି ଏ ଦଳର ଶାଖାପ୍ରଶାଖା ଗଠିତ ହେଲା । ଆତଙ୍କିତ ସରକାର ପୁଣି ସୁକର୍ଣ୍ଣଙ୍କୁ ନିର୍ବାସିତ କଲା ଫ୍ଲୋରେ ଦ୍ୱୀପକୁ । ବୋଭେନ୍ ଦିଗୋଲ୍‌କୁ ନିର୍ବାସିତ କରାଗଲା ସହସ୍ର ସହସ୍ର ଦେଶପ୍ରେମୀଙ୍କୁ—ଅଭିଯୋଗ, ସେମାନେ ୧୯୨୭ର ସାମ୍ୟବାଦୀ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ ।

ପରବର୍ତ୍ତୀ ସ୍ୱାଧୀନତା ଆନ୍ଦୋଳନର ବିଶଦ ଆଲୋଚନା କରିବାକୁ ମୁଁ ଯାଉ ନାହିଁ । ଦ୍ୱିତୀୟ ମହାଯୁଦ୍ଧର ପ୍ରଳୟଙ୍କର ବର୍ଷ-ଗୁଡ଼ିକଭିତରେ ଜଗତର ରାଜନୈତିକ ଭୂଗୋଳ ଓ ଇତିହାସରେ ବହୁ ଅଭାବିତ ପରିବର୍ତ୍ତନ ସଂଘଟିତ ହୋଇଯାଇଛି । ଜାପାନ ଯେତେବେଳେ ଇଣ୍ଡୋନେଶିଆ ଆକ୍ରମଣ କଲା, ସେତେବେଳେ ସେଦେଶର ଜାତୀୟ ନେତାମାନଙ୍କଭିତରେ ମତଭେଦ ଆସିଲା—ଜାପାନ ସାହାଯ୍ୟରେ ଡଚ୍ କର୍ତ୍ତୃତ୍ୱର ମୂଳୋତ୍ପାଟନ ଉଚିତ କି ନୁହେଁ ସାମ୍ୟବାଦୀ ଦଳର ମତ ଥିଲା,ଏକ ସମୟରେ ଉଭୟ ସାମ୍ରାଜ୍ୟବାଦ ଓ ଫାସିବାଦକୁ ପରାସ୍ତ କରିବାକୁ ପଡ଼ିବ । ଜନନେତା ଅମିର୍ ସେରିଫୁଦ୍ଦିନ୍‌ଙ୍କ ନେତୃତ୍ୱରେ ଏକ ବିରାଟ ସଂଗଠିତ ଗରିଲା ବାହିନୀ ନିଜକୁ ପ୍ରସ୍ତୁତ କରି ରଖିଥିଲା । କେତେକ ନେତା ଅବଶ୍ୟ ଜାପାନକୁ ଅସ୍ତ୍ର ହିସାବରେ ଡଚ୍‌ବିରୁଦ୍ଧରେ ସାମୟିକଭାବରେ ବ୍ୟବହାର କରିବାକୁ ଚାହୁଁଥିଲେ । କିନ୍ତୁ ଯେଉଁମାନେ ଜାପାନର ମିଷ୍ଟ ଶିଷ୍ଟ ପ୍ରତିଶ୍ରୁତିରେ ପ୍ରତାରିତ ହୋଇ ଫାସିବାଦୀ ଶକ୍ତିକୁ ମିତ୍ର ବୋଲି ଗ୍ରହଣ କରିନେଇଥିଲେ, ସେମାନଙ୍କର ଆଶା ଯେ କେତେ ବଡ଼ ମଧୁର ମରୀଚିକା, ସେ କଥା ଅଚିରେ ପ୍ରମାଣିତ ହେଲା । ଶେଷ ଦଂଶନ ଦେଇ ଡଚ୍‌ମାନେ ପଳାୟନ କଲେ ।

କିନ୍ତୁ ଦ୍ୱିତୀୟ ମହାଯୁଦ୍ଧରେ ଜାପାନର ଚୂଡ଼ାନ୍ତ ପରାଜୟ ପରେ ମଧ୍ୟ ଇଣ୍ଡୋନେଶିଆରେ ଥିବା ଜାପାନୀ ସେନାଧ୍ୟକ୍ଷମାନେ ବିନା ଯୁଦ୍ଧରେ କ୍ଷମତା ହସ୍ତାନ୍ତର କଲେ ନାହିଁ । 'ଅମିର୍ ସେରିଫୁଦ୍ଦିନ୍‌ଙ୍କ ବାହିନୀ ସେତେବେଳେ ଯେଉଁ ଜୀବନମୂର୍ଚ୍ଛା ଲଢ଼େଇ କରିଥିଲେ, ତାହା ଇଣ୍ଡୋନେସିଆର ଜନସାଧାରଣ ଚିରକାଳ ଶ୍ରଦ୍ଧାର ସହ ସ୍ମରଣ କରିବେ ।

ଅବଶେଷରେ, ସ୍ମରଣୀୟ ୧୯୪୫ ଅଗଷ୍ଟ ୧୭ । ଭାରତ ସ୍ୱାଧୀନତାପ୍ରାପ୍ତିର ଠିକ୍ ଦୁଇ ବର୍ଷ ଆଗେ ଏକ କ୍ଷୁଦ୍ର ଗୃହପ୍ରାଙ୍ଗଣରେ, ଏକ ଅନତିବୃହତ୍ ଜନସମାବେଶ ଆଗରେ ସୁକର୍ଣ୍ଣଙ୍କ ମୁଖରୁ ଇଣ୍ଡୋନେଶିଆର ମୁକ୍ତିଘୋଷଣା ପ୍ରଚାରିତ ହେଲା—"ଆମେ ଇଣ୍ଡୋନେଶିଆର ଜନଗଣ ଆମ ମାତୃଭୂମିର ସ୍ୱାଧୀନତା ଘୋଷଣା କରୁଛୁ ।"

କିନ୍ତୁ ବିପଦ ଏତେ ଶୀଘ୍ର ଶେଷ ହୋଇ ନ ଥିଲା । ପରାଜିତ ଜାପାନହାତରୁ ହଲାଣ୍ଡ ସରକାର ପୁଣି ଇଣ୍ଡୋନେଶିଆ ନିଜ ଅକ୍ତିଆରକୁ ଆଣିବାର ଚେଷ୍ଟା କରିଥିଲେ, ବ୍ରିଟେନର 'ଶ୍ରମିକ ସରକାରର' ସହଯୋଗରେ । ପ୍ରବଳପରାକ୍ରାନ୍ତ ସାମ୍ରାଜ୍ୟବାଦ-ବିରୁଦ୍ଧରେ ଶେଷ ରକ୍ତବିନ୍ଦୁ ପଣ କରି ଅପରାଜେୟ ଇଣ୍ଡୋନେଶିଆ ତାର ମାତୃଭୂମିର ଇଜ୍ଜତ ରକ୍ଷା କରିଛି, ନବଜାଗ୍ରତ ଏସିଆର ପୁଣ୍ୟ ବୃଦ୍ଧି କରିଛି ଏବଂ ବିଶ୍ୱଶାନ୍ତିର ଅନ୍ୟତମ ଅଗ୍ରଦୂତରୂପେ ବିଶ୍ୱମାନବତାର ଅଶେଷ କଲ୍ୟାଣ ସାଧନ କରିଛି ।

# ସଂସ୍କୃତିର ନବଜନ୍ମ

"Each man seemed an artist, each woman a dancer of almost immortal grace. Plays, thousands of years old, were performed by superb actors. Strange temples rose from the jungle, and at their doors laughed women of extraordinary beauty······"

*James A. Michener*

"Indonesia, Country of beauty & turmoil"

ଅଦ୍ୱିତୀୟ ସଂସ୍କୃତି ଓ ସୌନ୍ଦର୍ଯ୍ୟ ସମନ୍ୱୟର ଦେଶ ଇଣ୍ଡୋନେଶିଆ । ପ୍ରାଗୈତିହାସିକ ଯୁଗରୁ ଆଜଯାଏ ସଂସ୍କୃତି ଓ ସଭ୍ୟତାର ଯେତେ ପର୍ଯ୍ୟାୟ ଅତିକ୍ରମ କରି ଏ ଦେଶକୁ ଗତି କରିବାକୁ ପଡ଼ିଛି, ସେ ଅଭିଜ୍ଞତା ଜଗତର ଆଉ କୌଣସି ଜାତିର ଭାଗ୍ୟରେ ଘଟି ନାହିଁ । ଆଜି ବି ବାଲିଦ୍ୱୀପର ଘନବନାବୃତ ରହସ୍ୟମୟ ସୁଦୂର ଅଭ୍ୟନ୍ତରରେ ବହିର୍ଜଗତର ଅନବଲୋକିତ କେତେ କେତେ ସୂକ୍ଷ୍ମଶିଳ୍ପବିମଣ୍ଡିତ ହିନ୍ଦୁମନ୍ଦିର—ପ୍ରତ୍ୟେକଟି ବାଲି-କିଶୋରୀର ଚପଳ ଚରଣରେ ଆଶ୍ଚର୍ଯ୍ୟ ନୃତ୍ୟପ୍ରତିଭାର ଲଳିତ ଛନ୍ଦ । ପୃଥିବୀର ଘାର୍ଦ୍ଧତମ ଆଗ୍ନେୟଗିରିଅଞ୍ଚଳବଳୟିତ ସୁମାତ୍ରାର ଗାଁଗହଳରେ ଅପରିସୀମ ଦର୍ଶନ, ଶିଳ୍ପ, ସଂସ୍କୃତିର ପରିବେଷଣ । ବାଲି ଓ ସୁମାତ୍ରାର ଅଭ୍ୟନ୍ତରକୁ ଯାଇ ସେସବୁର ଘନ ସଂସ୍ପର୍ଶରେ ଆସିବାର ତୃଷ୍ଣା ମୋର ଅପରିତୃପ୍ତ ରହିଗଲା । ଯୁଗେ ଯୁଗେ

ଏଦେଶର ଐଶ୍ୱର୍ଯ୍ୟର ଆକର୍ଷଣ ସାରା ପୃଥିବୀର ଇତିହାସକୁ କିଛି କମ୍ ଆନ୍ଦୋଳିତ କରି ନାହିଁ। ଉତ୍ତର-ପୂର୍ବ ଇଣ୍ଡୋନେଶିଆରେ ଯେଉଁସବୁ ଶିଳାଶିଖରମୟ ମସଲାଦ୍ୱୀପ, ସେଇସବୁର ସନ୍ଧାନରେ ଦିନେ ଭାସ୍କୋଡ଼ାଗାମାଙ୍କର ସମୁଦ୍ର-ପୋତ 'କେପ୍ ଅଫ୍ ଗୁଡ୍ ହୋପ୍'ରେ ଆସି ପହଞ୍ଚିଥିଲା । ଏଇସବୁ ଦ୍ୱୀପପାଇଁ କଲମ୍ବସ୍ ଆମେରିକା ଆବିଷ୍କାର କଲେ ।

ଡଚ୍ ସରକାରର ଔପନିବେଶିକ ନୀତି ଭାରି ଚମତ୍କାର, ଏକଥା ବ୍ରିଟେନ ଭଳି ଦୋସ୍ତ-ସାମ୍ରାଜ୍ୟବାଦୀମାନେ କିଛି କମ୍ ପ୍ରଚାର କରି ନ ଥିଲେ। ବାସ୍ତବିକ କେତେ ଚମତ୍କାର, ସେକଥା ୧୯୦୬ ମସିହାର ଏକ ରକ୍ତମୟ ଦିବସର ସ୍ମୃତି ଗୁନ୍ତରେ ଧରି ଆଜି ବି ବାଲି ଦ୍ୱୀପର ଅଧିବାସୀମାନେ ମନେ ରଖିଛନ୍ତି । ବାଲିର ଅଧିବାସୀମାନେ ଶେଷପର୍ଯ୍ୟନ୍ତ ନୀତି ସ୍ୱୀକାର ନ କରିବାରୁ ସେଦିନ ଡଚ୍ ତାର ସମସ୍ତ ସାମରିକ ଶକ୍ତି ପ୍ରୟୋଗ କରି ବାଲିର ଶେଷ ସ୍ୱାଧୀନ ରାଜାଙ୍କ ସହ ହଜାର ହଜାର ନରନାରୀଙ୍କୁ ଅତି ଅତର୍କିତ ଅବସ୍ଥାରେ କମାଣ ଓ ବନ୍ଧୁକ ସାହାଯ୍ୟରେ ହତ୍ୟା କଲା ।

ତ୍ରୟୋଦଶ ଶତାବ୍ଦୀପର୍ଯ୍ୟନ୍ତ ଇଣ୍ଡୋନେଶିଆରେ ହିନ୍ଦୁ ସଂସ୍କୃତି ଅକ୍ଷୁଣ୍ଣ ଥିଲା । ସଂସ୍କୃତିର ଅନ୍ୟାନ୍ୟ ବିଭବକଥା ଛାଡ଼ିଦେଲେ କେବଳ ଭାଷାରେ ମଧ୍ୟ ସଂସ୍କୃତିର ଅବଦାନ କିଛି କମ୍ ନୁହେଁ । ବାନ୍ଦୁଂରେ ମୋ ସହିତ ଯେଉଁ ଯୁବକଟିର ଖୁବ୍ ବନ୍ଧୁତା ହେଲା, ତାଙ୍କ ନାମ "ଆଲି ନଟ ସୁଶାନ୍ତ "। ପ୍ରତ୍ୟେକ ମୁସଲମାନ ପରିବାରରେ କେତେ ଇମିତି ହିନ୍ଦୁନାମ। ରାଷ୍ଟ୍ରର ପ୍ରତୀକ "ଗରୁଡ଼", 'ଶିଷ୍ୟ' ବୋଇଲେ ଛାତ୍ର। 'ମହାଶିଷ୍ୟ' ବୋଇଲେ ବିଶ୍ୱବିଦ୍ୟାଳୟର

ଗୃହ । ଗୋଟିଏ କଲେଜର ମହଲା ହଷ୍ଟେଲ୍ ଆଗରେ ଲେଖା ଥିଲା,"ଆଶ୍ରମ ବନ୍ଦନା ମହାଶିଶ୍ୟ" ।

ହିନ୍ଦୁ ସଂସ୍କୃତି ସଙ୍ଗେ ସଙ୍ଗେ ଇଣ୍ଡୋଚୀନରୁ ବୌଦ୍ଧବାଦର ସ୍ରୋତ ମଧ୍ୟ ସମସାମୟିକଭାବରେ ଇଣ୍ଡୋନେଶିଆକୁ ଆସିଥିଲା । ପରେ, ତ୍ରୟୋଦଶ ଶତାବ୍ଦୀବେଳେ ଇସ୍‌ଲାମ୍ ପ୍ରବେଶ କଲା । କିନ୍ତୁ ଧର୍ମମତ ହିସାବରେ ଇସ୍‌ଲାମ ଯଥାଶୀଘ୍ର ବ୍ୟାପକତା ହାସଲ କରିଥିଲେ ମଧ୍ୟ ବହୁ ଯୁଗର ମୂଳ ହିନ୍ଦୁ ସଂସ୍କୃତିକୁ ତାହା ତଦନୁରୂପ ପ୍ରଭାବିତ କରିପାରିଲା ନାହିଁ । "ଇସ୍‌ଲାମ୍ ଦୈନନ୍ଦିନ ଜୀବନର ଧର୍ମ; ଗୃହକଳାଉପରେ ତାର ଦାବି ବିଶେଷ ନାହିଁ । ତେଣୁ ତାର ପ୍ରଭାବ ଇଣ୍ଡୋନେଶିଆର ସାମାଜିକ ଜୀବନରେ ପଡ଼ିଛି ପ୍ରଚୁର, କିନ୍ତୁ ସାଂସ୍କୃତିକ ଜୀବନରେ ନୁହେଁ ।······ଯେତେବେଳେ ମୁସଲମାନମାନେ ଇଣ୍ଡୋନେଶିଆ ଆସିଲେ, ସେତେବେଳେ ଦେଶର ସାଂସ୍କୃତିକ ଭିତ୍ତିଭୂମି ଥିଲା ହିନ୍ଦୁ ଏବଂ ସ୍ଥାନୀୟ ସମିଶ୍ରଣ । ତିନି ଶହ ବର୍ଷପରେ ଯେତେବେଳେ ପାଶ୍ଚାତ୍ୟ ଅଧିବାସୀମାନେ ଆସିଲେ, ସେତେବେଳେ ବି ସେ ଭିତ୍ତି ଈଷତ୍ ବଦଳିଥିଲା ମାତ୍ର । ତିନି ଶହ ପଞ୍ଚାଶ ବର୍ଷର ଡଚ୍ ଶାସନ ମଧ୍ୟ ସେଥିରେ କିଛି ମୌଳିକ ପରିବର୍ତ୍ତନ ଆଣିବାକୁ ସମର୍ଥ ହୋଇ ନାହିଁ । *

ସୁରବାୟାରେ ଜଣେ ଭାରତୀୟ ଗୃହଙ୍କୁ ଭେଟିଥିଲି । ତାଙ୍କ ଘର ଆସାମ । ଇଣ୍ଡୋନେଶିଆ ସରକାରଙ୍କ ବୃତ୍ତିରେ ବାଲିଦ୍ୱୀପରେ ରହି ନୃତ୍ୟ ଶିକ୍ଷା କରୁଛନ୍ତି । ସେ କହିଲେ, "ଭାରତୀୟ ନୃତ୍ୟ-ଶିଳ୍ପର ଯେଉଁସବୁ ସୁପ୍ରାଚୀନ କଳା ଆଜି ଭାରତବର୍ଷରୁ ଅବଲୁପ୍ତ

---

* "The Republic of Indonesia"—*Miss Dorothy Woodman.*

ହୋଇଗଲାଣି, ସେଥିବୁ ଏବେ ବି ଅକ୍ଷତ ଅବସ୍ଥାରେ ରହିଛି ଇଣ୍ଡୋନେଶିଆର ନୃତ୍ୟଶିଳ୍ପୀମାନଙ୍କ ସାଧନାଭିତରେ ।”

ଆଧୁନିକ ସଙ୍ଗୀତରେ ପାଶ୍ଚାତ୍ୟ ଢଙ୍ଗର ପ୍ରଭାବ ଖୁବ୍ ବେଶୀ; ତଥାପି ଜାକର୍ତ୍ତାରେ ଥିଲାବେଳେ ଦିନକର ପ୍ରତ୍ୟୁଷରେ ଏକପ୍ରକାର ଶାସ୍ତ୍ରୀୟ ଧରଣର ସଙ୍ଗୀତ ଶୁଣି ମୁଁ ଚକିତ ହୋଇଥିଲି । ଜାଣିଲି, ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତର ଧାରାଟି ବହୁ ବର୍ଷଭିତରେ ଏକ ସ୍ୱତନ୍ତ୍ର ରୂପ ନେଇ ଏଠାରେ ବଞ୍ଚିରହିଛି । ଭାରତୀୟ ଚଳଚ୍ଚିତ୍ର-ଗୁଡ଼ିକର ଗୀତରେକର୍ଡ଼ ଏଠାରେ ବେଶ୍ ଜନପ୍ରିୟ । ସାଧାରଣ ଲୋକଙ୍କଭିତରେ ଯେଉଁ ତିନି ଜଣ ଭାରତୀୟ ଅପେକ୍ଷାକୃତ ଅଧିକ ଜଣାଶୁଣା, ସେମାନେ ହେଲେ ନେହେରୁ, ମେନନ୍ ଏବଂ ରାଜ୍‌କପୁର୍ !

ସାରା ଦେଶରେ ଦୁଇ ଶହ ଆଞ୍ଚଳିକ ଭାଷା । ଏହି ସମସ୍ୟାର ସମାଧାନ ଦିଗରେ ଆଧୁନିକ ଇଣ୍ଡୋନେଶିଆ ଯେଉଁ ବୈପ୍ଳବିକ ପନ୍ଥା ଅନୁସରଣ କରିଛି, ତାହା ଏକ ଆଦର୍ଶ । “ଭାଷା ଇଣ୍ଡୋନେଶିଆ” ବୋଲି ଆଜି ଯାହାକୁ ସେମାନେ ସାର୍ବଜନୀନ ଭାଷାରୂପେ ଗ୍ରହଣ କରିଛନ୍ତି, ତାହାର ଉଦ୍‌ଭବ ମୌଳିକ-ଭାବରେ ମାଲୟାନ୍‌ରୁ ହୋଇଥିଲେ ମଧ୍ୟ ଏବଂ ବହୁ ଦେଶୀ ସଂସ୍କୃତିଜ ଥିଲେ ମଧ୍ୟ, ସେମାନେ ଲିଖନପାଇଁ ରୋମାନ୍ ହରଫକୁ ଗ୍ରହଣ କରିଛନ୍ତି । ଆଜି ଏହାହିଁ ଇଣ୍ଡୋନେଶିଆର ଜାତୀୟ ଭାଷା । ଏହି ଭାଷାକୁ ଗ୍ରହଣ କରିନେବାପାଇଁ ଜନସାଧାରଣଙ୍କୁ ଜାତୀୟ ନେତୃବର୍ଗ କିଛି କମ୍ ପରିଶ୍ରମ କରି ସମ୍ମତ କରାଇ ନାହାନ୍ତି ।

“ଆନ୍ତାରା” ନାମକ ସମ୍ବାଦ ପ୍ରତିଷ୍ଠାନର ଜଣେ ପ୍ରତିନିଧି ମୋ ସହିତ ଇଣ୍ଟରଭ୍ୟୁରେ ଅନ୍ୟାନ୍ୟ କଥାଭିତରେ ପଚାରିଲେ, “ଆମର ଭାଷା ଆପଣଙ୍କୁ ଶୁଣିବାକୁ କିପରି ଲାଗୁଛି ?” ମୁଁ କହିଲି,

"ପ୍ରୟାଗରେ ବୁଡ଼ ଦେଲେ ଯିମିତି ଅନୁଭୂତି ହୁଏ । ପ୍ରାଚ୍ୟ ଓ ପାଶ୍ଚାତ୍ୟର ଏଭଳି ସଫଳ ସମନ୍ୱୟ ଆଉ କୌଣସିଠି ହୋଇ ନାହିଁ, ଯିମିତି ହୋଇଛି ଆପଣଙ୍କ ଭାଷାରେ ।"

ସେ କହିଲେ, "ଆମର ସମାଜବଜ୍ଞାନୀମାନଙ୍କ ଆଗରେ ଆଜି ବଡ଼ ଜଟିଳ ସମସ୍ୟା । ଆମର ମୌଳିକ ସଂସ୍କୃତିକୁ ସାଢ଼େ ତିନି ଶତାବ୍ଦୀର ପାଶ୍ଚାତ୍ୟ ରାଜତ୍ୱ ଧ୍ୱଂସ କରି ପାରି ନାହିଁ ସତ୍ୟ, କିନ୍ତୁ ସତ୍ୟକୁ ଅସ୍ୱୀକାର କରି ହେବ ନାହିଁ । ପାଶ୍ଚାତ୍ୟ ଚାଲି-ଚଳଣି, ବହିଃସଭ୍ୟତା ଆମ ସମାଜର ଏକ ବିରାଟ ଅଙ୍ଗ ଆବୋରି ବସିଛି । ସେ ଗ୍ଳାନିରୁ ଆମକୁ ଯେପରି ମୁକ୍ତି ପାଇବାକୁ ପଡ଼ିବ, ଅନ୍ୟ ଦିଗରେ ଅନ୍ଧ ଉତ୍ତେଜନାର ଶିକାର ହୋଇ ଯେଉଁ ରକ୍ଷଣଶୀଳମାନେ 'ଯାହା କିଛି ବିଦେଶୀ ତାହା ବର୍ଜନୀୟ' ବୋଲି କହୁଛନ୍ତି, ସେମାନଙ୍କ ଭ୍ରାନ୍ତ ଦର୍ଶନର ସଂକ୍ରମଣରୁ ସେହିପରି ଜାତିକୁ ବଞ୍ଚାଇବାକୁ ପଡ଼ିବ । ଅବଶ୍ୟ ଇମିତି ବଞ୍ଚାଇରଖିବା ଭଳି ଦାନ ଡଚ୍ ଆମକୁ କିଛିମାତ୍ର ଦେଇ ନାହିଁ—ବହୁ ଘଟନାସ୍ରୋତର ପ୍ରଭାବରେ ଯାହା କିଛି ଆମେ ପାଇଛୁଁ ।"

ମୁଁ ମଧ୍ୟ ଭାବୁଥିଲି—ଦୁଇ ଶହ ବର୍ଷର ଶୋଷଣଭିତରେ ଭାରତବର୍ଷରେ ବ୍ରିଟିଶ ସରକାର ଏପରି ବହୁ କାମ କରିବାକୁ ବାଧ୍ୟ ହୋଇଥିଲି, ଯାହା ନ କରିଥିଲେ ଆମ ବିଶାଳ ଭୂଖଣ୍ଡକୁ ପରାଧୀନ କରି ରଖିବା ସମ୍ଭବପର ହୋଇ ନ ଥାନ୍ତା । କିନ୍ତୁ ସେସବୁ କାର୍ଯ୍ୟର ଯେଉଁଟା ବୈଜ୍ଞାନିକ ଓ ପ୍ରଗତିଶୀଳ ଦିଗ, ତାର ଫଳଭୋଗରୁ ଭାରତୀୟମାନଙ୍କୁ ବଞ୍ଚିତ କରିବାର ଉପାୟ ମଧ୍ୟ ବ୍ରିଟିଶର ନ ଥିଲା । କେ. ଏମ୍. ପାନିକରଙ୍କ ଭାଷାରେ "ପର୍ତ୍ତୁଗୀଜମାନଙ୍କ ଭଳି ଡଚ୍‌ମାନଙ୍କର ଧର୍ମୋନ୍ମାଦ ନ ଥିଲା ।

ଇଂରେଜ ଜାତିର ମୋଟାମୋଟି ଯେଉଁ ମାନବତାବୋଧ ଥିଲା, ସେଥିରୁ ମଧ୍ୟ ସେମାନେ ବଞ୍ଚିତ ଥିଲେ ଫରାସୀ ଜାତି ପରି ସାଂସ୍କୃତିକ ନେତୃତ୍ୱ ନେବାର କ୍ଷମତା ବି ସେମାନଙ୍କର ନ ଥିଲା।" ସୁତରାଂ କେବଳ ଶୋଷଣର ନଗ୍ନମୂର୍ତ୍ତି ଛଡ଼ା ଇଣ୍ଡୋନେଶୀୟମାନେ ମନେ ରଖିବା ଭଳି ଆଉ କିଛି ଦାନ ଡଚ୍ ସରକାର ଦେଇ ପାରି ନାହିଁ।

ଆଜି ସମଗ୍ର ଜାତିର ଅଭୂତପୂର୍ବ ନବ ଜାଗରଣ ଦେଶର ସାହିତ୍ୟରେ ମଧ୍ୟ ପ୍ରଚୁର ଅନୁପ୍ରେରଣା ସୃଷ୍ଟି କରିଛି। ଉପଯୁକ୍ତ ମୁଦ୍ରଣାଳୟ, ସର୍ବାଧୁନିକ ପ୍ରକାଶ-ଶିଳ୍ପ ଆଦିର ଅଭାବ କ୍ରମଶଃ ଦୂରୀଭୂତ ହେଉଛି। ୧୯୨୯ ସାଲରେ ଏକ ଯୁବ-ସମ୍ମିଳନୀରେ ଦାବି କରାଯାଇଥିଲା, "ଏକ ଦେଶ, ଏକ ଜାତି, ଏକ ଭାଷା"। ଆଜି ସେ ଦାବି ବାସ୍ତବ ରୂପ ନେବାରେ ବହୁଦୂର ଅଗ୍ରସର ହୋଇପାରିଛି। ସାହିତ୍ୟ କ୍ରମଶଃ ନାନା ସମ୍ଭାରରେ ପୂର୍ଣ୍ଣ ହେବାକୁ ଯାଉଛି। ୧୯୦୫ ରେ "The Generation of 45" ନାମକ ଏକ ସାହିତ୍ୟାନୁଷ୍ଠାନର ଜନ୍ମ ହୋଇଥିଲା। ଆଜିକୁ ପ୍ରାୟ ୧୨ ବର୍ଷ ତଳେ ଇଣ୍ଡୋନେସିଆର ଅନ୍ୟତମ ଶ୍ରେଷ୍ଠ ସାହିତ୍ୟିକ ଚେରିଲ୍ ଆନୋଆର୍‌ଙ୍କ ନେତୃତ୍ୱରେ "ଗେଲାଂଗାଂ" ନାମକ ଏକ ଅନୁଷ୍ଠାନର ଗଠନ ହେଲା। ତାର ଇସ୍ତାହାରରେ ଲେଖା ଥିଲା—

"ଆମେ ସମଗ୍ର ବିଶ୍ୱର ସଂସ୍କୃତିର ଉତ୍ତରାଧିକାରୀ। ଆମେ ଯେଉଁ କୃଷ୍ଟି ସୃଷ୍ଟି କରିବୁ, ତାହା ଆମ ନିଜ ରାସ୍ତାରେହିଁ ଗଢ଼ା ହେବ। ଆମେ ଜନତାର ନନ୍ଦନ। ଜନତା ଅର୍ଥ ଆମେ ବୁଝୁଁ--ବହୁ କିସମର ମଣିଷ, ଯେଉଁମାନେ ସୃଷ୍ଟି କରିବେ ନବତମ ଧରିତ୍ରୀ।

"ଆମର ଜାତୀୟ ଐକ୍ୟ କଣ ? ଆମ ଚମଡ଼ାର ରଙ୍ଗ ? ଆମ ମୂର୍ତ୍ତିର ଗଠନ ?

"ଆମର ଐକ୍ୟ ହେଲା ଆମ ଆତ୍ମାର ଏବଂ ଅନ୍ତରର ଐକ୍ୟ । ଆମ ଦେଶର ସଂସ୍କୃତି ସମୃଦ୍ଧ ହେବ ଦୁନିଆର ସବୁ ଦେଶର, ସବୁ ମଣିଷଙ୍କର ଦାନସମ୍ଭାରଦ୍ୱାରା । କିନ୍ତୁ ଏ ଦାନର ପରିସ୍ଫୁରଣ ହେବ ଆମର କଣ୍ଠରେ, ଆମର ଭାଷାରେ ଏବଂ ଆମର ରଚନାଶୈଳୀରେ !

"ବିପ୍ଳବର ଅର୍ଥ କଣ ? ଯେଉଁସବୁ ମୂଲ୍ୟବୋଧ ଜରା-ଜର୍ଜର, ତାର ଉତ୍ପାଟନ । ତେଣୁ ଆମେ ବିଶ୍ୱାସ କରୁଁ, ଆମ ବିପ୍ଳବ ଏବେ ବି ଅସମାପ୍ତ ।"

ଏ ଇତ୍ୟାଦାରର ଭିତାହିଁ କହିକିଏ, ଆଜ ସାହିତ୍ୟକୁ କିପରି ନୂତନ ମୂଲ୍ୟବୋଧରେ ଗ୍ରହଣ କରାଯାଉଛି ଏବଂ ପରାଧୀନତାର ଜଡ଼ତା ନିର୍ମୂଳ କରିବାପାଇଁ ସାହିତ୍ୟିକ ଅଭ୍ୟୁଦୟର ପ୍ରୟୋଜନୀୟତାଉପରେ କି ଗୁରୁତ୍ୱ ଦିଆଯାଉଛି । ସରକାରୀ ପ୍ରଚେଷ୍ଟାରେ Touring Library ର ପ୍ରବର୍ତ୍ତନ କରାଯାଇ ଗାଁଗହଳରେ ଲୋକମାନଙ୍କୁ ବହିପତ୍ର ଯୋଗାଇ ଦିଆଯାଉଛି ।

ଭାରତୀୟ ପରମ୍ପରାଗତ ଐଶ୍ୱର୍ଯ୍ୟକୁ ଆଜ ଯେପରିଭାବରେ ଜନସାଧାରଣଙ୍କ ରାଜନୈତିକ ଚେତନାର ଅଭିବୃଦ୍ଧି ସକାଶେ ବ୍ୟବହାର କରାଯାଉଛି, ତାହା ଯେକୌଣସି ହାଲ୍ ସ୍ୱାଧୀନତାପ୍ରାପ୍ତ ଦେଶପକ୍ଷରେ ଅନୁକରଣୀୟ ।

ରାମାୟଣ ଇଣ୍ଡୋନେଶିଆର ଜାତୀୟ କାହାଣୀ । ତାକୁ ଆଜ ନୂଆ ରୂପରେ ପରିବେଷଣ କରାଯାଉଛି । ସୀତା ହେଉଛନ୍ତି ଇଣ୍ଡୋନେଶିଆର ସ୍ୱାଧୀନତାର ପ୍ରତୀକ । ରାବଣ ହେଲା ଡଚ୍ ।

ସମଚନ୍ଦ୍ର ନବଜାଗ୍ରତ ଇଣ୍ଡୋନେଶିଆର ଯୁବ-ସମାଜ । ଏଇ ବିଷୟବସ୍ତୁ ଉପରେ ଦିନପରେ ଦିନ ଅଭିନୟ ଚାଲିଛି ପୁରପଲ୍ଲି-ଅଭ୍ୟନ୍ତରରେ । ଅଭିନୟଭିତରେ ମର୍କଟ ବାହିନୀକୁ ଆଳ କରି ନାନାବିଧ ହାସ୍ୟରସର ପରିବେଷଣ ।

ସିନେମା-ଶିବିର ସାହାଯ୍ୟରେ ଗାଁଗହଳର ଜନସାଧାରଣଙ୍କ ଭିତରେ ଦେଶଜ ଓ ଆନ୍ତର୍ଜାତିକ ପରିସ୍ଥିତି ସମ୍ପର୍କରେ ନିୟମିତ ଶିକ୍ଷାଦାନ ଚାଲିଛି । ଦୁର୍ଗମ ଗିରି, ଦୁସ୍ତର ପାରାବାର ଅତିକ୍ରମ କରି ବିଭିନ୍ନ ଯୁବ-ଆନ୍ଦୋଳନର ସଭ୍ୟମାନେ ଜନ୍ମାସ୍ଥ ଦେଶବାସୀଙ୍କୁ ସଚେତନ କରିବାଲାଗି ପ୍ରାଣାନ୍ତକ ପ୍ରୟାସ ଚଳାଇଛନ୍ତି । ଯେଉଁ ଜାତିର ଆବାଳବୃଦ୍ଧବନିତା ସାମାନ୍ୟ କେତୋଟି ବର୍ଷର ସଶସ୍ତ୍ର ସଂଗ୍ରାମଭିତରେ ଏକ ଦିଗରେ ଦୁର୍ଦ୍ଧାନ୍ତ ଫ୍ୟାସିଜମ୍ ଓ ଅନ୍ୟ ଦିଗରେ ସାଢ଼େ ତିନି ଶତାବ୍ଦୀର ସାମ୍ରାଜ୍ୟ-ବାଦୀ ଶୃଙ୍ଖଳକୁ ଧୂଳିସାତ୍ କରିଦେଇପାରିଲେ, ସେମାନେ ଯେ ନିଜର ଗୌରବୋଜ୍ଜ୍ୱଳ ପରମ୍ପରା ରକ୍ଷା କରିବାପାଇଁ ସଜାଗ ପ୍ରଚେଷ୍ଟା କରିବେ, ଏଥିରେ ବିସ୍ମିତ ହେବାର କିଛି ନାହିଁ । ଇଣ୍ଡୋନେଶୀୟ ଯୁବକ ଗୋଟିଏ କଥା ଉତ୍ତମଭାବରେ ଉପଲବ୍ଧି କରିଛି—ଅଶିକ୍ଷା ଅର୍ଥ କୁଶିକ୍ଷା ଏବଂ କୁଶିକ୍ଷା ବିଭେଦର ଅଗ୍ରଦୂତ । ଏଇ ବିଭେଦ ହାସଭିର ନରକପଥରେ ଏକ ନିମ୍ନଗାମୀ ସୋପାନ ମାତ୍ର ।

# ଝଡ଼ର ସଙ୍କେତ

ଦ୍ୱିପ୍ରହରର ମେଘମୁକ୍ତ ଆକାଶରୁ ଆମର ବ୍ୟୋମଯାନ ଜାକର୍ତ୍ତାର ବିସ୍ତୃତ ବିମାନବନ୍ଦରରେ ଯେତେବେଳେ ଅବତରଣ କଲା, ଏସିଆ-ଆଫ୍ରିକା ଛାତ୍ରସମ୍ମିଳନୀ ଅଭ୍ୟର୍ଥନା ସମିତିର ସଭ୍ୟବୃନ୍ଦଙ୍କ ତତ୍ପରତାରେ ଅନ୍ୟାନ୍ୟ ଯାତ୍ରୀ ପରି ସେଠାକାର କଷ୍ଟମ୍ସ୍ ଅଫିସ୍‌ରେ ଆଉ କୌଣସି ବିଳମ୍ବ ହେଲା ନାହିଁ। ଅଭ୍ୟର୍ଥନା ସମିତିର ଏକ ବଡ଼ ଲରି ଆନ୍ୱେଷଣ କରି ସେମାନଙ୍କ ଅଫିସକୁ ଆସିଲୁଁ । ଖିଆପିଆ ଶେଷ କରିବାରେ ମୁଁ ଟିକିଏ ବିଳମ୍ବ କରିଦେଲି, କାରଣ ଅନ୍ୟ ପ୍ରତିନିଧିମାନଙ୍କ ସହ ନ ଯାଇ ଜଣେ ସ୍ଥାନୀୟ ଯୁବକଙ୍କୁ ଧରି ମୁଁ ଏକ ଖୁବ୍ ଶ୍ରେଷ୍ଠ ଦେଶୀୟ ରେଷ୍ଟୁରାଣ୍ଟ୍‌ଭିତରକୁ ପଶିଯାଇଥିଲି ଇଣ୍ଡୋନେଶିଆର ନିଜସ୍ୱ ଖାନା ଖାଇବା ଉଦ୍ଦେଶ୍ୟରେ । ଯୁବକଟି କୌଣସିପ୍ରକାରେ ମୋତେ ସେଠାକୁ ନେବାକୁ ପ୍ରସ୍ତୁତ ନ ଥିଲେ ; କିନ୍ତୁ ମୋର ଜିଦ୍ ଯୋଗୁଁ ଶେଷରେ ବାଧ୍ୟ ହେଲେ ।

ଖାଇବା ପର୍ବ ଶେଷ ହେବାଭିତରେ ଆମ ଉଭୟଙ୍କର ପରସ୍ପର ସଙ୍କୋଚ ଓ ଲୌକିକତା କଟିଯାଇଥିଲା । ଯୁବକଟିର ପରିଚୟ ଜାଣିଲି, ସେ ହେଉଛନ୍ତି ଜାକର୍ତ୍ତା ବିଶ୍ୱବିଦ୍ୟାଳୟର ଜଣେ ଗ୍ରାଜୁଏଟ୍ ଏବଂ ବର୍ତ୍ତମାନ ବାନ୍ଦୁଂର ଏକ ଦୈନିକ ପତ୍ରିକାର ସହକାରୀ ସମ୍ପାଦକ । ଅଳ୍ପ ଦିନତଳେ ଛାତ୍ର ଥିଲେ ବୋଲି ଏହି ବିରାଟ ଛାତ୍ରସମାବେଶର ମୋହ ତ୍ୟାଗ କରି ନ ପାରି

ସ୍ୱତଃସ୍ଫୂର୍ତ୍ତ ଭାବରେ ପଢ଼ିବାର ଅନୁମତି ନେଇ ଆସି ଅଭ୍ୟର୍ଥନା ସମିତିକୁ ସାହାଯ୍ୟ କରୁଛନ୍ତି ।

ସେ କହିଲେ, "ମୁଁ ଶୁଣିଛି, ଭାରତବର୍ଷରେ ୩୫ କି ୩୬ଟି ବିଶ୍ୱବିଦ୍ୟାଳୟ । କିନ୍ତୁ ଆମ ଦେଶ କଥା ସ୍ୱତନ୍ତ୍ର । ଡଚ୍ ସରକାର ଆମ ଦେଶ ଛାଡ଼ି ଯିବାବେଳେ ଶତକଡ଼ା ୯୫ ଜଣଙ୍କୁ ନିରକ୍ଷରରୂପେ ଛାଡ଼ିଯାଇଥିଲେ । ଗୋଟିଏମାତ୍ର ବିଶ୍ୱବିଦ୍ୟାଳୟ ଥିଲା ଏବଂ ସର୍ବମୋଟ ୨୦୦ ଜଣ ଗ୍ରାଜୁଏଟ୍ ଥିଲେ ।" ବିମର୍ଷ ହସ ହସି ସେ କହିଲେ, "ସୁତରାଂ ବୁଝି ପାରୁଛନ୍ତି, ଜଣେ ବିଶ୍ୱବିଦ୍ୟାଳୟ ଗ୍ରାଜୁଏଟ୍‌ର ସମ୍ମାନ ଏଠାରେ କେତେ ବେଶି ! ଅବଶ୍ୟ ଆମେ ବର୍ତ୍ତମାନ ତିନିଗୋଟି ବିଶ୍ୱବିଦ୍ୟାଳୟ ସ୍ଥାପନ କରିସାରିଛୁ— ଜାକର୍ତ୍ତା ବିଶ୍ୱବିଦ୍ୟାଳୟ, ଇଣ୍ଡୋନେଶୀୟ ବିଶ୍ୱବିଦ୍ୟାଳୟ ଓ ଏର୍ଲଙ୍ଗା ବିଶ୍ୱବିଦ୍ୟାଳୟ ।"

"ଆପଣ କେଉଁ ବର୍ଷ ଗ୍ରାଜୁଏଟ୍ ହେଲେ ?"

"ମାତ୍ର ଗତ ବର୍ଷ ।"

ଗତ ବର୍ଷ ଗ୍ରାଜୁଏଟ୍ ହେବା ତୁଳନାରେ ତାଙ୍କର ବୟସ ଯଥେଷ୍ଟ ଅଧିକ ବୋଲି ମୋର ମନେ ହେଉଥିଲା । ମୁଁ କିଛି ପଚାରିବା ପୂର୍ବରୁ ସେ କହିଲେ, "ଆପଣ ବହୁତ ଯୁବକଙ୍କୁ ଦେଖିବେ ଯେଉଁମାନେ ମୋଭଳି ଅଧିକ ବୟସରେ ଛାତ୍ରଜୀବନ ସମ୍ପ୍ରତି ଶେଷ କରିଛନ୍ତି ବା ଏପର୍ଯ୍ୟନ୍ତ ପଢ଼ୁଛନ୍ତି । ମୁଁ ଦୁଇ ବର୍ଷଯାଏ ଡଚ୍ ସରକାରଙ୍କହାତରେ ବନ୍ଦୀ ଥିଲି । ଅକଥନୀୟ ଅତ୍ୟାଚାର ଭୋଗି ମୋର ସ୍ୱାସ୍ଥ୍ୟ ଏପରି ଭାଙ୍ଗିପଡ଼ିଥିଲା ଯେ, ମୁକ୍ତ ହେବା-ପରେ ଆଉ ଦୁଇ ବର୍ଷ ବିଶ୍ରାମରେ ଗଲା । ଏହିଭଳି ଚାରି ବର୍ଷ ଏବଂ ପୂର୍ବରୁ ଆଉ ଗୋଟାଏ ବର୍ଷ ଆତ୍ମଗୋପନ କରି ରହିବାରେ ବିତି ଯାଇଥିଲା । ସୁତରାଂ ବୁଝି ପାରୁଛନ୍ତି···"

ହୋଟେଲରୁ ବାହାରେ ଆସିଲୁଁ । ଅଫିସକୁ ଆସି ଦେଖୁଁ, ଅନ୍ୟ ବନ୍ଧୁମାନେ ଷ୍ଟେସନ ଗ୍ଲଲିଗଲେଣି । ବ୍ୟତିବ୍ୟସ୍ତ ହୋଇ ମୋର ସାମ୍ବାଦିକ ବନ୍ଧୁ ଗୋଟିଏ 'ବେଚ୍' ଡାକି ଆଣି ଛନ୍ଦିରେ ମୋତେ ବସାଇ ନିଜେ ବସିଲେ । 'ବେଚ୍' ଏକପ୍ରକାର ରିକ୍ସା, ଖୁବ୍ ଉଚ୍ଚ ନୁହେଁ ଏବଂ ରିକ୍ସାବାଲା ପଛପଟରେ ବସି ପେଡ଼େଲ୍ ମାରି ଆଗକୁ ଗାଡ଼ି ଠେଲି ଠେଲି ନେଇଯାଏ ।

ଅସମ୍ଭବ ଜନଗହଳପୂର୍ଣ୍ଣ ସହର ଜାକର୍ତ୍ତା । ଶୁଣିଲି, ଦୈର୍ଘ୍ୟ ପ୍ରସ୍ଥ ଅନୁପାତରେ ପୃଥିବୀର ଅନ୍ୟତମ ଜନବହୁଳତମ ସହର ହେଉଛି ଜାକର୍ତ୍ତା—ପୂର୍ବେ ଯାହାର ନାମ ଥିଲା 'ବାଟାଭିଆ' । ଏକଦା ସ୍ଥାନଟି ବଡ଼ ସନ୍‌ସନ୍ତିଆ ଥିଲା ଏବଂ ବିଶେଷ କରି ୟୁରୋପୀୟମାନଙ୍କୁ ମୋଟେ ସହ୍ୟ ହେଉ ନ ଥିଲା । ତେଣୁ ଡଚ୍‌ମାନେ ଜାକର୍ତ୍ତାକୁ "ୟୁରୋପୀୟମାନଙ୍କର ଶ୍ମଶାନଭୂମି" ଉପାଧିରେ ଭୂଷିତ କରିଥିଲେ । ଆଜି ଜାକର୍ତ୍ତା ସହରର ଜନସଂଖ୍ୟା ଏପରି ତୀବ୍ରଭାବରେ ବଢ଼ିଚାଲିଛି ଯେ, ତୁରନ୍ତ ସହରବିସ୍ତୃତିର ଯୋଜନା ନ ହେଲେ ଅବସ୍ଥା ଆୟତ୍ତାଧୀନ ରହିବ ନାହିଁ, ଏକଥା ଯୁବକଟି ଅନୁଭବ କରୁଥିଲେ ।

ଷ୍ଟେସନଭିତରେ ପୂର୍ବରୁ ଅଦେଖା ସୁନ୍ଦର ସୁନ୍ଦର ଫଳର ପସରା ଭରି, ବିଶେଷ କରି ଏକପ୍ରକାର ଖଟାବହୁଳ ଲିଚୁ ଓ ମାଛକାତି ଲାଗିଥିବା ଭଳି ଚକ୍‌ମକ୍ ଏକପ୍ରକାର 'ସପେଟାଜାତୀୟ ଫଳ ।

ରେଲ୍‌ବାଇ ବ୍ୟବସ୍ଥା ଭାରତବର୍ଷଠୁଁ ଯଥେଷ୍ଟ ଉନ୍ନତ । ପ୍ରତ୍ୟେକ କାମରାରୁ ଅନ୍ୟ କାମରାକୁ ସ୍ୱଚ୍ଛନ୍ଦ ରାସ୍ତା ଏବଂ ଜଣେ ପ୍ରଥମ କାମରାରୁ ଶେଷ ଇଞ୍ଜିନ ପାଖରଯାଏ ମନଇଚ୍ଛା ବୁଲିବୁଲି କରି-ପାରିବ । ଟ୍ରେନ୍‌ର ପ୍ରାୟ ମୋଖାମଝି କାମରାଟି ହୋଟେଲ୍ ଓ

ରେଷ୍ଟୁରାଣ୍ଟ । ଅନେକ ଟ୍ରେନରେ ସେକେଣ୍ଡ କ୍ଲାସ ଓ ଫାର୍ଷ୍ଟ କ୍ଲାସ କାମରାଗୁଡ଼ିକ ଶୀତ-ତାପ-ନିୟନ୍ତ୍ରିତ । ଥାର୍ଡ଼ କ୍ଲାସରେ ମଧ୍ୟ ବେତ-ବୁଣା ସିଟ୍‌ଗୁଡ଼ିକ ଇମିତି ସୁନ୍ଦରଭାବରେ ବୁଣାଯାଇଛି ଯେ, କାମରାର କାପାସିଟିରୁ ବେଶୀ ଲୋକ ବସିବା ସମ୍ଭବପର ନୁହେଁ । ଝରକାର କାଚସବୁ ଈଷତ୍ ନୀଳ ।

ବମ୍ବୁରାନପୂନରେ ଝରକାବାହାରର ଚଳନ୍ତ ଦୃଶ୍ୟପଟ ଦେଖୁଥିଲି । ମୋର ଚିରଦିନର ସ୍ୱପ୍ନର ଦ୍ୱୀପ ଜାଭା ! ଅସଂଖ୍ୟ ଅଜଣା ତରୁଲତା, ସିଗ୍ଧ ଶାନ୍ତ ସବୁଜ-ଓଦାଓଦା ପରିବେଶ । ଗାଁଗଣ୍ଡା, ପାହାଡ଼ପର୍ବତ, ନଈଝରଣା, ମାଇଲ ମାଇଲ ଆଖୁ ଓ ରବର କ୍ଷେତ, କର୍ମବ୍ୟସ୍ତ ଶକ୍ତିମାନ୍ ପ୍ରଶାନ୍ତ ନରନାରୀ, ସମସ୍ତଙ୍କୁ ଟପି ଧୀର ଶବ୍ଦ ଅଥଚ ତୀବ୍ର ଗତିରେ ଟ୍ରେନ୍ ଚାଲିଥାଏ । ଅନ୍ତହୀନ ସମୟର କେଉଁ ଅନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ପାଗଳ ସମୁଦ୍ରର ଅତଳ ଗର୍ଭରୁ ଏଇସବୁ ଦ୍ୱୀପପୁଞ୍ଜର ଜନ୍ମ ହେଲା, କେବେ କିମିତି ଏହାର ଶିଳାବନ୍ଧୁର ବନମର୍ମର ନିଦାଘ ଛାତିରେ ମଣିଷର ବସବାସ ଆରମ୍ଭ ହେଲା, ସେକଥା ଇତିହାସ, ନୃତତ୍ତ୍ୱ ବା ଭୂତତ୍ତ୍ୱର ଅନୁସନ୍ଧାନର ବିଷୟ । ଏଇ ଦ୍ୱୀପପୁଞ୍ଜଉପରେ ଅସୁମାରି କାଳ ଧରି କେତେ କେତେ ପ୍ରାକୃତିକ ଓ ରାଜନୈତିକ ବିପର୍ଯ୍ୟୟ ଘଟିଯାଇଛି ! କେତେ ଝଡ଼ଝଞ୍ଜା, ସାମନ୍ତବାଦୀ, ସାମ୍ରାଜ୍ୟବାଦୀ ଯୁଗର କେତେ ପଦଚିହ୍ନ ଏହାର ଛାତିରେ ଅଙ୍କିତ ହୋଇ ରହିଛି । ଏସବୁର କଳ୍ପନାଭିତରେ ମୁଁ କିନ୍ତୁ ଏ ଦେଶର ମାଟି ଛୁଇଁବା ପରଠୁଁ ଏହାର ଜଳବାୟୁ, ମାନବାତ୍ମା ଓ ପ୍ରାକୃତିକ ପରିବେଶ ସହ ଏକ ଅନନୁଭୂତପୂର୍ବ ନିବିଡ଼ ଆତ୍ମୀୟତା ଉପଲବ୍ଧି କରୁଥାଏଁ । ମୁଁ ଆସିଛି ଭାରତବର୍ଷରୁ, ଭାରତବର୍ଷର ଏପରି ଏକ

ରାଜ୍ୟରୁ, ଯେଉଁ ରାଜ୍ୟର ଶିଳ୍ପ, ସଂସ୍କୃତି, ସାହିତ୍ୟ, ହୃଦୟ ଆଜି ବି ଜାଭା, ବାଲିଦ୍ୱୀପ ସହ ତାର ଐତିହାସିକ ସମ୍ବନ୍ଧ କଥା ମନେ ପକାଇ ଗର୍ବ କରେ । ଏଇସବୁ ସମୁଦ୍ରତଟରେ—ଯେଉଁଠି ଦୁର୍ଦ୍ଧର୍ଷ ଶିଳାଗୁଳୁଉପରେ ଅମଦମନୀୟ ଲହରୀସବୁ ଭାଙ୍ଗିପଡ଼ୁଛି—ଅତୀତ କଳିଙ୍ଗର ସାହସୀ ନାବିକମାନେ ଆସି ଲଙ୍ଗର ତୋଳି-ଥିବେ । ଏଇ ମାଟି, ବାଲି, ନଗର, ଜନପଦଭିତରେ ଯେପରି ସେହିସବୁ ପୂର୍ବପୁରୁଷମାନଙ୍କର ସ୍ମୃତି ଖେଳିବୁଲୁଛି ।

ମୋ ଶ୍ରବଣେନ୍ଦ୍ରିୟଉପରେ ବଡ଼ ଅଭଦ୍ର ଆଘାତ ଦେଇ ଧପ୍‌କନା ଜଣେ କିଏ ଆସି ମୋ ଆଗ ସିଟ୍‌ରେ ବସିପଡ଼ି କହିଲେ, "ହାଲୋ ! ଇଣ୍ଡିଆନ ?"

ମୁଁ ଅନାଇଲି—ହାତରେ ଏକ୍‌ସ୍ଟ୍ରାଦାମୀ ସିଗାରେଟ ଟିଣ, ନୋଟ ଖାତା ଓ କଲମ । ମନେ ହେଲା ଆମେରିକାନ୍ ।

ମୋର ଅନୁମାନ ଠିକ୍ ।

ଆମେରିକାନ୍‌ମାନେ ଫ୍ରିଲେନ୍‌ସ ସାମ୍ବାଦିକ ବୋଲି ପରିଚୟ ଦିଅନ୍ତି । ପରେ ଅବଶ୍ୟ ଏ ଭଦ୍ରଲୋକଙ୍କର ଅସଲ ପରିଚୟ ମୁଁ ଜାଣିଲି । ଶେଷପର୍ଯ୍ୟନ୍ତ ଇଣ୍ଡୋନେସିଆର କେତେକ ସମ୍ବାଦପତ୍ର ଓ ଛାତ୍ରସମାଜ ଏହାଙ୍କୁ ସେଦେଶ ଛାଡ଼ି ପଳାଇବାକୁ ବାଧ୍ୟ କରିଥିଲେ ।

ସେ କହିଲେ, "ମୁଁ କେବଳ ଏଇ ସମ୍ମିଳନୀପାଇଁ ମୋ ଦେଶରୁ ଧାଇଁଆସିଛି ।" ଏହାପରେ ବହୁତ କଥା କହି ମୋତେ ସିଏ ପ୍ରଶ୍ନ ପଚାରିବାକୁ ଲାଗିଲେ । ମୁଁ କେବଳ କହିଲି, "ଆମେରିକାର ପ୍ରେସ୍‌ମାନେ ଆମର ଏ ସମ୍ମିଳନୀପ୍ରତି ଏପରି ସାଂଘାତିକ ଆଗ୍ରହୀ ହୋଇପଡ଼ିଥିବା ବାସ୍ତବିକ ବଡ଼ ବିସ୍ମୟଜନକ ରୋମାଣ୍ଟିକ୍

କଥା । ମୋତେ ଟିକଏ ବସୁମ୍ବର ଧକ୍କା କଟାଇବାକୁ ସମୟ ଦିଅନ୍ତୁ । ପରେ କଥାଭାଷା ହେବା ।”

ଏତିକବେଳେ ମୋର ପୂର୍ବପରିଚିତ ସାମ୍ବାଦିକ ଯୁବକଟି ପହଞ୍ଚିଲେ । ଆମେରିକାନ୍ ଭଦ୍ରଲୋକଙ୍କୁ ଦେଖି ତାଙ୍କ ମୁଖ-ମଣ୍ଡଳରେ କ୍ରୋଧ ଛୁଟି ହୋଇ ଉଠିବାର ମୁଁ ଲକ୍ଷ୍ୟ କଲି । ତାଙ୍କୁ ଦେଖିବା ମାତ୍ରେ ଫ୍ରିଲେନ୍ସ୍ ଜର୍ଣ୍ଣାଲିଷ୍ଟ୍ ଜଣକ ଚଟ୍‌ପଟ୍ ସିଟ୍ ଛାଡ଼ି ଉଠିଗଲେ ।

ଆଗନ୍ତୁକ ଯୁବକ ବନ୍ଧୁ କହିଲେ, “ଜାଣିଛନ୍ତି ଏମାନେ କପରି ପ୍ରଚାରସବୁ ଆରମ୍ଭ କରିଛନ୍ତି ? ଏଇ ଦେଖନ୍ତୁ ।” ସିଙ୍ଗାପୁରରୁ ପ୍ରକାଶିତ ଏକ ସାପ୍ତାହିକ ପତ୍ରିକାର ପ୍ରଥମ ପୃଷ୍ଠାପ୍ରତି ସେ ମୋର ଦୃଷ୍ଟି ଆକର୍ଷଣ କଲେ । ଏସିଆ-ଆଫ୍ରିକା ଯୁବ ସମ୍ମିଳନୀ ଯେ ନିଶ୍ଚୟ ବ୍ୟର୍ଥ ହେବ, ଶାନ୍ତି ସୌହାର୍ଦ୍ଦ୍ୟ ଇତ୍ୟାଦି ଯେ କେବଳ ସୁକର୍ଣ୍ଣ ପ୍ରଭୃତିଙ୍କ ଉଦ୍‌ଭାବିତ ଏକ ଏକ ପ୍ରତାରଣାମୂଳକ ଉକ୍ତି, ଏହାହିଁ ପତ୍ରିକାର ସମ୍ପାଦକ ତାଙ୍କ ଟିପ୍ପଣୀରେ ଲେଖିଥିଲେ ।

ସଙ୍କେତ ଧୀରେ ଧୀରେ ସ୍ପଷ୍ଟ ହୋଇଉଠିଲା । ସଂଗ୍ରାମୀ ଇଣ୍ଡୋନେସିଆ ଆଜି ବିଶ୍ୱଶାନ୍ତିପାଇଁ ଯେଉଁ ଅଭିଯାନ ଚଳାଇଛି, ସେ ଅଭିଯାନର ପଥକୁ କଣ୍ଟକିତ କରିବାପାଇଁ ସାମ୍ରାଜ୍ୟବାଦି-ମାନେ ଓ ସେମାନଙ୍କର ଉଚ୍ଛିଷ୍ଟପୁଷ୍ଟ ଗୁପ୍ତଚରମାନେ ଆହତ ସରୀସୃପ ଭଳି ଲଗିପଡ଼ି ଚେଷ୍ଟା ଚଳାଇଛନ୍ତି ।

ମୋର ସମର୍ଥିତା ଭଙ୍ଗି ଯୁବକ ଜଣକ କହିଲେ, “ଏଭଳି ବହୁ ଷଡ଼ଯନ୍ତ୍ରର ଅଭିଜ୍ଞତା ଆଗରୁ ଆମର ହୋଇଛି । ଆପଣ ଯାହାସବୁ ଏପର୍ଯ୍ୟନ୍ତ କଳ୍ପନା କରି ନାହାନ୍ତି, ବାନ୍ଦୁଂରେ ପହଞ୍ଚି

ସେସବୁ ମଧ୍ୟ ଜାଣିବେ । କିନ୍ତୁ ମୁଁ ନିଶ୍ଚିତ, ଏସିଆ, ଆଫ୍ରିକା, ଦୁଇ ମହାଦେଶର ୨୭ଟି ଦେଶର ଏ ଯୁବସମାବେଶକୁ 'ବ୍ୟର୍ଥ କରିବାପାଇଁ ଯେଉଁ ହିମ୍ମତ ଦରକାର, ସେ ହିମ୍ମତ ଆଜି ବିଧ୍ୱସ୍ତ ହୋଇଯାଇଛି ।"

କଲିକତା ଛାଡ଼ିବାର ତିନି ଦିନ ପୂର୍ବରୁ ଆମେ ଭାରତର ବଡ଼ ବଡ଼ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହେବାର ଦେଖିଥିଲୁଁ, ବାନ୍ଦୁଂଆଗତ ଚୀନ ପ୍ରତିନିଧିଦଳଙ୍କର ଜାହାଜଭିତରେ କେହି ଅଜ୍ଞାତନାମା ଶତ୍ରୁ ବିସ୍ଫୋରକ ମାରଣାସ୍ତ୍ର ରଖିଦେଇଥିଲି । ହଂକଂରେ ହଠାତ୍ ଏ ଷଡ଼୍‌ଯନ୍ତ୍ର ପ୍ରକଟ ହୋଇପଡ଼ିବାରୁ ଉକ୍ତ ଜାହାଜ ବଦଳାଇ ଚୀନ ସରକାରଙ୍କ ପ୍ରେରିତ ଅନ୍ୟ ଏକ ସ୍ୱତନ୍ତ୍ର ଜାହାଜରେ ପ୍ରତିନିଧି ଦଳ ବାନ୍ଦୁଂ ଯାତ୍ରା କଲେ । ସୁତରାଂ ଏକ ଶାନ୍ତିପୂର୍ଣ୍ଣ ଯୁବସମାବେଶ ହିସାବରେ ଯାହାକୁ ଆମେ ଦେଖୁଥିଲୁଁ, ତାକୁ ବ୍ୟର୍ଥ କରିବାପାଇଁ ମଧ୍ୟ କେତେ ଜଘନ୍ୟ ସନ୍ତ୍ରାସବାଦୀ ଚକ୍ରାନ୍ତ କାମ କରୁଛି, ଏକଥା ବେଶ୍ ଅନୁଭବ କରିପାରିଥିଲୁଁ ।

ସୂର୍ଯ୍ୟାସ୍ତର କେତେକ ମୂହୂର୍ତ୍ତ ପୂର୍ବରୁ ଆମର ଟ୍ରେନ୍ ବାନ୍ଦୁଂ ଷ୍ଟେସନରେ ଯାଇ ପହଞ୍ଚିଲା । ଅଭ୍ୟର୍ଥନା ସମିତି ସଭ୍ୟମାନଙ୍କର ସହୃଦୟ ତତ୍ପରତା କଥା ଚିରଦିନ ମନେ ରହିଥିବ ।

ମୁଁ ଏବଂ ଭାରତୀୟ ପ୍ରତିନିଧି ଦଳର ଅନ୍ୟ କେତେକ ସଭ୍ୟଙ୍କୁ ଧରି ବସ୍ ଯାଇ ସହରର ପ୍ରାୟ ମଧ୍ୟଭାଗରେ ଅବସ୍ଥିତ ସାଭୋୟ୍ ହୋମାନ୍ ହୋଟେଲରେ ପହଞ୍ଚିଲା । ସେଠାରେ ପହଞ୍ଚିବା ମାତ୍ରେ ଇଣ୍ଡୋନେଶିୟାନ୍ ଟାଇମ୍‌ସ୍ ନାମକ ସମ୍ବାଦପତ୍ର ଓ ଅନୁରୂପ ଆଉ କେତେକ ପତ୍ରିକାରେ ଏକାନ୍ତ ଅମୂଳକ କେତେକ ସମ୍ବାଦ ପଢ଼ି ମୁଁ ଆହୁରି କୌତୂହଳୀ ହୋଇଉଠିଲି ।

ଧୀରେ ଧୀରେ ବୁଝିଲି, " There are more things in heaven and earth Horatio ! than are dreamt of in your philosophy."

ଭାରତର କୌଣସି ସମ୍ବାଦପତ୍ର ବା ସମ୍ବାଦ ପ୍ରତିଷ୍ଠାନ ସେମାନଙ୍କର ନିଜସ୍ୱ ପ୍ରତିନିଧି ପଠାଇ ନ ଥିବା ଯୋଗୁଁ ବିଦେଶୀ ସମ୍ବାଦ ସରବରାହକମାନଙ୍କ ଉପରେ ନିର୍ଭର କରି ଉପସ୍ଥାନକଭାବରେ ପ୍ରଚାରିତ ହୋଇଥିଲେ । ଏଇସବୁ ଅର୍ଥହୀନ ଘଟଣା ଓ ଅନ୍ୟ କେତେକ ସାମାନ୍ୟ ବିଷୟକୁ କେନ୍ଦ୍ର କରି ଭାରତର ସମ୍ବାଦପତ୍ର-ମାନଙ୍କରେ ଯେଉଁଭଳି ବିବରଣୀମାନ ପ୍ରକାଶ ପାଇଥିଲା, ତାହାକୁ ସମ୍ମିଳନୀର ସଫଳତା ଆଗରେ ଭିତ୍ତିହୀନ ବୋଲି କହିଲେ ଅସଙ୍ଗତ ହେବ ନାହିଁ ।

# ଶ୍ରୀଯୁକ୍ତ ମାଲୁମ ନହିଁ ସାହେବ

ଘନ କୁହୁଡ଼ିର ନୀଳ ପର୍ଦ୍ଦାସବୁ ଚିରିଚିରି ସାଭୋୟ୍ ହୋମାନ୍ ହୋଟେଲର ଉପର ମହଲାରେ ସ୍ନିଗ୍ଧ ସୂର୍ଯ୍ୟର ପ୍ରଥମ ରଶ୍ମିଗୁଚ୍ଛ ଆସି ଫିଟିହୋଇ ପଡ଼ିଲା ଯେତେବେଳେ, ଉପର ବାରଣ୍ଡାରୁ ତଳକୁ ଅନାଇ ଦେଖିଲି, ଯାନବାହନର ବେଶ୍ ଗହଳ ପ୍ରଚଳ ।

ଇଣ୍ଡୋନେସିଆର ପାରିଶ୍ — ବାନ୍ଦୁଂ ମହାନଗରୀ । ଏତେ ସୁନ୍ଦର ପ୍ରାକୃତିକ ପରିବେଶ-ପରିପୁଷ୍ଟ, ଏତେ ଅତ୍ୟାଧୁନିକ ଫେସନବାଜ ସହର ଏସିଆରେ କ୍ୱଚିତ୍ ଅଛି । ପାଶ୍ଚାତ୍ୟ ସଭ୍ୟତା-ସମ୍ମିଶ୍ରିତ ଏହି ସହରର ଆନ୍ତର୍ଜାତିକ ମର୍ଯ୍ୟାଦା ୧୯୫୫ର ଏସିଆ-ଆଫ୍ରିକା ପ୍ରଧାନମନ୍ତ୍ରୀ ସମ୍ମିଳନୀ ପରଠାରୁ ବହୁ ଗୁଣରେ ବୃଦ୍ଧି ପାଇଛି । ଯେକୌଣସି ଆନ୍ତର୍ଜାତିକ ସମ୍ମିଳନୀପାଇଁ ବାନ୍ଦୁଂ ସହର ଆବାହକର ଭୂମିକା ଗ୍ରହଣ କରିବାଲାଗି ବହୁ ସୁବିଧା ସଞ୍ଚିତ କରି ରଖିଛି । ପ୍ରଶସ୍ତ ସହର, ଉତ୍ତମ ଜଳବାୟୁ, ପରିଚ୍ଛନ୍ନ ଉନ୍ମୁକ୍ତ ପଥ ପ୍ରାନ୍ତର, ସୁସଜ୍ଜିତ ସୁନ୍ଦର ସୁନ୍ଦର ହଲ୍ ଏବଂ ବଡ଼ ବଡ଼ ଆଧୁନିକ ହୋଟେଲ । ବହୁ ଭଲ ଭଲ ପାଶ୍ଚାତ୍ୟ ରୁଚି ସମ୍ପନ୍ନ ହୋଟେଲ ବାନ୍ଦୁଂରେ ରହିଛି । ତେବେ ସାଭୋୟ୍ ହୋମାନ୍ ହୋଟେଲ, ଯେଉଁଥିରେ ଆମେ ରହିଥିଲୁଁ, ତନ୍ମଧ୍ୟରେ ବୃହତ୍ତମ ଓ ଆଧୁନିକତମ । ମୁଁ ରହିଥିବା କୋଠରୀଟି ଥିଲା ଯଥେଷ୍ଟ ବଡ଼ ଏବଂ ଦୁଇ ଭାଗରେ ବିଭକ୍ତ । ଆମେ ଚାରି ଜଣ ସେଥିରେ ରହି-ଥିଲୁଁ—ମୁଁ, ନରସିଂହ ରାଓ, ସୁଖେନ୍ଦୁ ମଜୁମଦାର ଓ ଗୌହାଟୀର ପ୍ରାଣେଶ୍ୱର ଦାସ । ପ୍ରଭାତରେ ବିଛଣାରେ ପଡ଼ି ପ୍ରାଣେଶ୍ୱର

ସଙ୍ଗୀତ ଚର୍ଚ୍ଚା କରୁଥିଲେ—"ହାଗରହଙ୍ଗମେ କତନାଭୁ ହାଶନ୍ତୁ, ଡବ୍ଭୁ ଓ ତୋ ହୁଆ ନାହିଁ ହାନ୍ତ, ଭୁବ୍ବ ଓ ମନଦ୍ ମୋର ପ୍ରହାନ୍ତ ହାଗରେର ଉର୍ମିମାଳାପୂ ଅହାନ୍ତ ।" ଅର୍ଥାତ୍ କେତେ ସାଗର-ସଙ୍ଗମ ସନ୍ତରଣ କରିକରି ମଧ୍ୟ ମୋର ମାନସ ଏବେ ବି ଅଶାନ୍ତ । ଆସାମୀସ୍ବା ଭଷାରେ 'ସ' ଗୁଡ଼ିକୁ ପ୍ରାୟଶଃ 'ହ' ଉଚ୍ଚାରଣ କରନ୍ତୁ ଏ ।

ତଳ ମହଲାର ଡାଇନିଂ ହଲ୍‌କୁ ଆସି ଜଳଖିଆ କରୁଥିଲି । ଅଭ୍ୟର୍ଥନା ସମିତିର ପ୍ରାରମ୍ଭିକ ବୁଲେଟିନ୍‌ରେ ଲେଖି ଦିଆଯାଇଥାଏ —ହୋଟେଲରେ ଖାନାପିନାର ପରିବେଷକମାନଙ୍କୁ 'ବୟ୍' ବୋଲି ଡାକିବା ମନା । ବୟ୍ ହେଉଛି ଏକ ଔପନିବେଶିକ ଅଭିବ୍ୟକ୍ତି ଏବଂ ଇଣ୍ଡୋନେଶୀୟମାନେ ଏଭଳି ସବୁ ପରମ୍ପରାକୁ ଘୃଣା କରନ୍ତି । ମଣିଷର ଆତ୍ମମର୍ଯ୍ୟାଦା କ୍ଷୁଣ୍ଣ କରୁଥିବା ଭଳି ଯେକୌଣସି ଅଭିବ୍ୟକ୍ତିକୁ ଉତ୍ଖାତ କରିବାପାଇଁ ସେଦେଶର ଯୁବସମାଜ କିପରି ସତର୍କ, ପ୍ରଥମ ପ୍ରଭାତରେ ଏଇ ତାର ପ୍ରଥମ ପ୍ରମାଣ ପାଇ ବଡ଼ ଆନନ୍ଦ ଅନୁଭବ କଲି ।

ଆଜ ୨୧ ତାରିଖ ମେ । ଆଗାମୀ କାଲି ସମ୍ମିଳନୀର ଆରମ୍ଭ । ଆଜି ତେଣୁ କିଛି କାମ ନାହିଁ । ହୋଟେଲ ବାରଣ୍ଡାକୁ ବୁଲି ଆସିଲି । ବିସ୍ମୟ-ବିମୁଗ୍ଧ ଆଖି ନେଇ ଦେଖିଲି, ସମଗ୍ର କିଶୋର-ବାହିନୀ ଯେପରି ଉଠିଆସିଛି । କମ୍‌ବୟସ୍କ କିଶୋରକିଶୋରୀଙ୍କର ସେ କି ଭିଡ଼ ! ସମସ୍ତଙ୍କ ହାତରେ କିସମ କିସମର ଅଟୋଗ୍ରାଫ୍ ଖାତା ଓ କଲମ । ମହୁମାଛି ଦଙ୍ଗଲ ଭଳି ଗୁଣୁଗୁଣୁ ହୋଇ ବେଢ଼ି ଯାଉଥାନ୍ତି—ଅଟୋଗ୍ରାଫ୍ ଦରକାର । ଦସ୍ତଖତ କରୁଁ କରୁଁ ମୋର ହାତ ଶ୍ରାନ୍ତ ଓ ଅବଶ ହୋଇଆସିଲା । ଏତିକିବେଳେ ଆନ୍ତର୍ଜାତିକ ପ୍ରସ୍ତୁତି କମିଟିର ଭାରତୀୟ ପ୍ରତିନିଧି ସୁଖେନ୍ଦୁ

ଉପରୁ ଆସି ସମସ୍ତଙ୍କ ଆଗରେ ଘୋଷଣା କଲେ, "ସେ ଜଣେ କବି ।"

ସ୍ଥାପରେ ମୁମୂର୍ଷୁ ମୋତେ କେନ୍ଦ୍ର କରି ସେ କି ଉତ୍ଫୁଲ୍ଲ ଟଣାଭିଡ଼ା—ସମସ୍ତଙ୍କର ଆବଦାର, ସେମାନଙ୍କ ଖାତାରେ ଦୁଇ ଲାଇନ କରି କବିତା ଲେଖିଦେବାକୁ ପଡ଼ିବ ।

ପିଲାକାଳରେ ଗଳ୍ପ ଶୁଣିଥିଲି, କାଳିଦାସ ଥରେ କୌଣସି ଏକ ଅପରିଚିତ ରାଜ୍ୟ ଭ୍ରମଣ କରୁଥିବାବେଳେ ସେଠାକାର ଜଣେ ସର୍ବଜ୍ଞ କବି ତାଙ୍କ ସହ ଯୁକ୍ତି କରିବାକୁ ଚାହିଁବାରୁ କାଳିଦାସ ପରା କହିଥିଲେ "ଅହାଗଛ" । ସଙ୍ଗେ ସଙ୍ଗେ ପ୍ରତିଦ୍ୱନ୍ଦ୍ୱୀ ଜବାବ ଦେଲେ, "ତାଳଗଛ ନଡ଼ିଆଗଛ, ଆମ୍ବଗଛ, ପଣସଗଛ, ଇତ୍ୟାଦି ଇତ୍ୟାଦି" । ସେତେବେଳେ ଉପସ୍ଥିତ ଲୋକେ ଦେଖିଲେ ଯେ, କାଳିଦାସ ଗୋଟିଏ ଗଛର ନାମ କହୁଥିବା ସ୍ଥଳେ ସେମାନଙ୍କ ପଣ୍ଡିତ ଯେତେବେଳେ ଏତେ ଗଛର ନାମ କହିପାରୁଛନ୍ତି, କାଳିଦାସ ଅବଶ୍ୟ ଉତ୍ତମମଧ୍ୟମ ପାଇବାର ଯୋଗ୍ୟ । ଚତୁର କାଳିଦାସ ହତବୁଦ୍ଧି ହୋଇ ପଣ୍ଡିତଙ୍କୁ କହିଲେ, "ମହାଶୟ ! ଆପଣଙ୍କର ସମୁଦ୍ର ଭଳି ପ୍ରଜ୍ଞା । ଅନୁଗ୍ରହପୂର୍ବକ ଆପଣଙ୍କ ଶ୍ମଶ୍ରୁରୁ କେଶଟିଏ ଏ ଅଧମକୁ ଦାନ କରନ୍ତୁ । ତାହାକୁ ମୂଲ୍ୟବାନ୍ ସମ୍ପଦରୂପେ ମୁଁ ସାଇତି ରଖିବି ।" ଆତ୍ମୋତ୍ଫୁଲ୍ଲ ପଣ୍ଡିତ ବାଳଟିଏ ଦାଢ଼ିରୁ ଛିଡ଼ାଇ କାଳିଦାସଙ୍କୁ ଦେବାକ୍ଷଣି ଉପସ୍ଥିତ ଜନତା ବାଳ-ଆହରଣର ସୁଯୋଗ ନ ହରାଇ ପଣ୍ଡିତଙ୍କୁ ନିବାଳ କରି ଦରିମରା କରି ଦେଇଥିଲେ ।

ମନେ ପଡ଼ିଲା, ମଜୁମଦାରଙ୍କୁ ପୂର୍ବରୁ ଥରେ ଗୋଟିଏ ଜାଗାରେ ମୁଁ ପ୍ରାୟ ଇମିତି ଅବସ୍ଥାରେ ପକାଇଥିଲି ତାଙ୍କୁ ଜଣେ ଗାୟକ ବୋଲି ପରିଚିତ କରାଇ ।

"ଇମିଗ୍ରେସନରେ କଣ କରିଚା ଲେଖା ହୁଏ ?" ମୁଁ ବୁଝାଇବାର ଚେଷ୍ଟା କଲି ଏବଂ ସମସ୍ତଙ୍କୁ ନେଇ ବାସ୍ତବିକ ହୋଟେଲ ପ୍ରାଙ୍ଗଣର ଏକ କୋଣରେ ଗଳ୍ପସଳ୍ପ ଆରମ୍ଭ କଲି ।

*　　*　　*　　*

ଉଜ୍ଜ୍ୱଳ ଶାଣିତ ଆଖି । ମୋହର ବୟସର ଜଣେ ଯୁବକ । ନାମ ତାଙ୍କର ଜାଭାଦମା । ବଶିଷ୍ଟ ପ୍ରଗତଶୀଳ ଦୈନିକ "ବାର୍ତ୍ତା ବାନ୍ଦୁଂ"ର (ବାର୍ତ୍ତା ଶବ୍ଦ ଭାରତୀୟ । ତାଙ୍କ ଭାଷାରେ ମଧ୍ୟ ସମାନ ଅର୍ଥ) ସହକାରୀ ସମ୍ପାଦକ । ନବୀନ ଇଣ୍ଡୋନେଶିଆର ସମସ୍ତ ଦାୟିତ୍ୱ ଯେ ବହୁଳାଂଶରେ ଆଜ ଯୁବକମାନେହିଁ ଗ୍ରହଣ କରିଛନ୍ତି, ସେହି ପ୍ରମାଣର ପ୍ରତିନିଧିତ୍ୱ କରୁଛନ୍ତି ଜାଭାଦମା । ତାଙ୍କ ଜୀବନର ଇତିବୃତ୍ତ ବଡ଼ କରୁଣ । ପିତା, ମାତା, ଭାଇ, ଭଉଣୀ ମିଶି ପରିବାରର ଅବଶିଷ୍ଟ ସାତ ଜଣଯାକ ତିନ ବର୍ଷତଳେ ଏକ ଦାରୁଣ ମଟର ଦୁର୍ଘଟଣାରେ ଏକସମୟରେ ପ୍ରାଣ ହରାଇଥିଲେ । ଦୃଢ଼ ଇଚ୍ଛାଶକ୍ତିପୂର୍ଣ୍ଣ ଦୃଷ୍ଟିପଟ୍ଟପଟରେ ଏହି ଚୂଡ଼ାନ୍ତ ଟ୍ରାଜେଡ଼ିର ସ୍ମୃତି ସେ ସର୍ବଦା ଗୁପିରଖିଥିଲେ । ବାନ୍ଦୁଂରେ ମୋର ତେର ଦିନର ରହଣୀଭିତରେ ବହୁ ଆନନ୍ଦଦାୟକ ମୁହୂର୍ତ୍ତର ସ୍ମୃତି ଜାଭାଦମାଙ୍କ ସହ ଜଡ଼ିତ ।

ଜାଭାଦମାଙ୍କ ସହ ରାସ୍ତାରେ ବୁଲିବୁଲି ବାନ୍ଦୁଂ ସହର ଦେଖୁଥିଲି । ଅଧିକାଂଶ ଦୋକାନପତ୍ର, ବ୍ୟବସାୟର ଚାଳକ ହେଉଛନ୍ତି ଚୀନା । କେବଳ ବାନ୍ଦୁଂ ନୁହେଁ ଇଣ୍ଡୋନେଶିଆର ଅନ୍ୟାନ୍ୟ ସହରର ଅବସ୍ଥା ମଧ୍ୟ ସେଇପରି । ଅବଶ୍ୟ ଏମାନଙ୍କ ଭିତରୁ ଅଧିକାଂଶ ଆଜ ଏଦେଶରେ ପରିପୂର୍ଣ୍ଣ ନାଗରିକ । ବହୁ ଦିନରୁ ମାତୃଭୂମି ସହ ସମ୍ପର୍କ ତୁଟିଯାଇଛି । କିନ୍ତୁ ମୁଷ୍ଟିମେୟ ବିଦେଶୀ

ରହିଛି ସେ ଦିନପରେ ଦିନ ଇଣ୍ଡୋନେଶିଆର ଅର୍ଥନୀତିକୁ ପଙ୍ଗୁ କରି ରଖିଛନ୍ତି, ତାହା ଆଜି ଏ ଦେଶର ପ୍ରଗତି-ପଥରେ ବିରାଟତମ ପ୍ରତିବନ୍ଧକ । ଦେଶର ପ୍ରଗତିଶୀଳ ଜନମତ, ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଅବଶ୍ୟ କ୍ରମଶଃ ଜାତୀୟକରଣ ଦିଗରେ ଏବଂ ବିଦେଶୀ ପୁଞ୍ଜି ବାଜ୍ୟାପ୍ତ କରିବା ଦିଗରେ ପଥ ପ୍ରଶସ୍ତ କରିଦେଉଛି । ଆଜି ବିଦେଶୀ ପୁଞ୍ଜିପ୍ରତି, ବିଶେଷତଃ ଆମେରିକାନ୍ ପୁଞ୍ଜିପ୍ରତି ଜନସାଧାରଣଙ୍କର ଘୃଣାର ଅନ୍ତ ନାହିଁ । ଆମେରିକା ଯେପରିଭାବରେ ଜାଲ ବିସ୍ତାର କରିଥିଲା, ସେଥିରେ ଇଣ୍ଡୋନେଶିଆର ଜନସାଧାରଣଙ୍କ କଥା ଛାଡ଼ିଦେଲେ, ଏପରି କି ଡଚ୍‌ମାନେ ମଧ୍ୟ ଆତଙ୍କିତ ହୋଇଉଠିଥିଲେ । ✻

"ବୁଝିଲେ ଆଜ୍ଞା ! କେତେ ଶହ ମାତ୍ର ପ୍ରାଥମିକ ସ୍କୁଲ ସମଗ୍ର ଦେଶଟାରେ ଥିଲା । ସେଥିରେ ପୁଣି ଡଚ୍ ଭାଷାରେ ଶିକ୍ଷାଦାନ । ଲକ୍ଷେ କୋଡ଼ିଏ ହଜାର ପ୍ରତିରେ ଜଣେମାତ୍ର ଉଚ୍ଚଶିକ୍ଷା ପାଇ ପାରୁଥିଲେ । ଯିଏ ମଧ୍ୟ ଶିକ୍ଷିତ ହେଉଥିଲେ, ତାଙ୍କ ଲବ୍ଧ ଜ୍ଞାନର ଅର୍ଥ ବା କଣ ?" କହୁଥିଲେ ଜଣେ ବୃଦ୍ଧ ଅବସରପ୍ରାପ୍ତ ଶିକ୍ଷକ । ଜାଭାଦମାଙ୍କ ଜଣେ ବନ୍ଧୁଙ୍କ ମାରଫତ ପରିଚୟ ହୋଇଥିଲା ତାଙ୍କ ସହ ।

---

✻ Thus, while in 1941, United States capital invested in Indonesia was only 50 per cent of the total foreign copital, in 1949, it became twice as great as British capital and 2 5 times as great as Dutch Capital."—*Indonesian Trade Union delegate Ali Marjono's report to the Asian-Australian Trade Union Conference, Peking, Nov . Dec. 1949.*

"ଅଷ୍ଟାଦଶ ଶତାବ୍ଦୀର ଜର୍ମାନ୍ ଲେଖକ ଯୋହାନ୍ ପିଟର୍ ହେବେଲଙ୍କ 'କ୍ୟାନଷ୍ଟର୍ଫଟାନ୍' ପଢ଼ିଛନ୍ତି ?" ଉଜ୍ଜ୍ୱଳ ମୁଖମଣ୍ଡଳରେ ବଦ୍ରୂପ ଫୁଟାଇ ଅଧ୍ୟାପକ ଯେଉଁ ଗଳ୍ପ କହିବାକୁ ଲାଗିଲେ, ତାର ଭାରତୀୟ ସଂସ୍କରଣ ଏଇପରି ହେବ—

ଥରେ ଡଚ୍ କର୍ତ୍ତୃପକ୍ଷ ବିଚାର କଲେ, ଇଣ୍ଡୋନେଶିଆର ବିଶ୍ୱବିଦ୍ୟାଳୟ ଶିକ୍ଷାଭିତରେ ଅନ୍ୟାନ୍ୟ ଦେଶମାନଙ୍କର ଇତିହାସ ପଢ଼ା ହେବା ଉଚିତ । କାରଣ ତାହା ପୂର୍ବରୁ ଏସିଆର ଦେଶ-ମାନଙ୍କ ସମ୍ପର୍କରେ ପଢ଼ା ହେବାପାଇଁ ବହୁ ଦାବି ଛାତ୍ରମାନଙ୍କଦ୍ୱାରା ହୋଇଥିଲା !

ଏତିକବେଳେ ଜଣେ ଇଣ୍ଡୋନେଶୀୟ ପରିବ୍ରାଜକ ଭାରତ-ବର୍ଷ ସମ୍ପର୍କରେ ଏକ ପ୍ରାମାଣ୍ୟ ତଥ୍ୟପୂର୍ଣ୍ଣ ଗ୍ରନ୍ଥ ପ୍ରଣୟନ କଲେ । ତାଙ୍କ ଆଖିଉପରେ ଅବଶ୍ୟ ଚଷମାର ଆବରଣ ଥିଲା । କିନ୍ତୁ ସେଥିପାଇଁ ନୁହେଁ, ତାଙ୍କର ପ୍ରାକୃତିକ ଆଖିଯୋଡ଼ିକହିଁ ନେଟିଭ୍ ମାଟି ଆଲୁଅରେ ପ୍ରସ୍ତୁତ ବୋଲି କର୍ତ୍ତୃପକ୍ଷ ତାଉପରେ ଆସ୍ଥା ରଖିବା ବୁଦ୍ଧିମାନର କାମ ହେବ ନାହିଁ ବୋଲି ବିବେଚନା କଲେ । ଅତଏବ ସ୍ଥିର ହେଲା, ଜଣେ ଡଚ୍ ମନୀଷୀ ଭାରତବର୍ଷ ବୁଲି ଭ୍ରମଣବୃତ୍ତାନ୍ତ ଲେଖିବେ ।

ମିଷ୍ଟର୍ କ୍ୟୁ ଯାଇ ଭାରତବର୍ଷର ପ୍ରବେଶପଥ ବୋମ୍ବେରେ ପଦାର୍ପଣ କରି ମାତ୍ର କେତେ ଘଣ୍ଟା ଥିଲେ । ଅନ୍ୟାନ୍ୟ ବସ୍ତୁପୁ-ଞ୍ଜର ପଦାର୍ଥଭିତରେ ସେ ଦେଖିଲେ ଏକ ଅତି ବୃହତ୍ ଚମତ୍କାର ଇମାରତ୍ । କିନ୍ତୁ ସମସ୍ତ ଗୃହିଁରହି ତାପରେ ଡ୍ରାଇଭରକୁ ପଚାରିଲେ-(ହଁ, କହିବାକୁ ଭୁଲିଯାଇଛି, ସାହେବ ପୂର୍ବରୁ ବହୁ ଟ୍ରେମାଞ୍ଜିକର ଭ୍ରମଣବୃତ୍ତାନ୍ତ ପଢ଼ିଥିଲେ ଏବଂ ଲେଡ କ୍ୟୁଙ୍କ

ଉପଦେଶକ୍ରମେ ହିନ୍ଦୁସ୍ଥାନ ଯିବାପୂର୍ବରୁ କିଛି କିଛି ହିନ୍ଦୀ ଶବ୍ଦ ଶିଖିନେଇଥିଲେ)—"ଏ ଡ୍ରାଇଭର, ୟେ ବିଲ୍‌ଡ଼ିଂ କିସ୍‌ନେ ବନାୟା ହୈ ?" ଡ୍ରାଇଭର ଉତ୍ତର ଦେଲା, "ମାଲୁମ୍ ନହିଁ ସାହେବ ।"

ମିଷ୍ଟର କ୍ରୁ ଚଟାପଟ୍ ନୋଟଖାତା କାଢ଼ି ଲେଖିନେଲେ—ଏ ବ୍ୟୁଟିଫୁଲ୍ ବିଲ୍‌ଡ଼ିଂ ବିଲ୍‌ଟ୍ ବାଇ ମିଷ୍ଟର୍ ମାଲୁମ୍ ନହିଁ ସାହେବ ।

ତାପରେ ସାହେବ ପହଞ୍ଚିଲେ କଲିକତା ମହାନଗରୀରେ । ପ୍ରଥମେ ଅଡ଼ିକାୟ ହାବଡ଼ା ପୋଲ । ପୁଣି ସେଠାକାର ଟାକ୍ସି ଡ୍ରାଇଭରକୁ ପ୍ରଶ୍ନ ହେଲା, "ୟେ ଡ୍ରାଇଭର, ୟେ ବ୍ରିଜ୍ କିସ୍‌ନେ ବନାୟା ହୈ ?" ଡ୍ରାଇଭରର ଉତ୍ତର, "ମାଲୁମ ନହିଁ ସାହେବ ।" ମିଷ୍ଟର କ୍ରୁ ଭକ୍ତିଗଦ୍‌ଗଦ ଚିତ୍ତରେ ଶ୍ରୀଯୁକ୍ତ ମାଲୁମ୍ ନହିଁ ସାହେବଙ୍କ ଉଦ୍ଦେଶ୍ୟରେ ସଶ୍ରଦ୍ଧ ପ୍ରଣିପାତ ଜଣାଇଲେ । ତାପରେ ଆଉ ଏକ ଚମତ୍କାର କୋଠା । ଡ୍ରାଇଭରଠୁଁ ଜାଣିଲେ, ତାହା ମଧ୍ୟ ମାଲୁମ ନହିଁ ସାହେବଙ୍କ କୀର୍ତ୍ତି ।

ମିଷ୍ଟର କ୍ରୁଙ୍କ ମନରେ ଦୁରନ୍ତ ଆକାଙ୍‌କ୍ଷା, ଥରେ ମାଲୁମ ନହିଁ ସାହେବଙ୍କ ସହ ମୁଲାକାତ ହେବା ଏକାନ୍ତ ଆବଶ୍ୟକ । ଦିନେ ଏକ ବିରାଟ ସଭାରେ ସେ ଦେଖିଲେ, ଜଣେ ପୃଥୁଳକାୟ ବକ୍ତାଙ୍କର ଅନର୍ଗଳ ବାଣୀ ସଭିଏଁ ନିର୍ବାକ୍ ହୋଇ ଶୁଣୁଛନ୍ତି । ସାହେବ ଜଣେକ ବକ୍ତାଙ୍କୁ ଜିଜ୍ଞାସି ଜାଣିଲେ, ମାଲୁମ ନହିଁ ସାହେବ ଭାଷଣ ଦେଉଛନ୍ତି । ଅଜସ୍ର ଭିଡ଼ ଠେଲି ସିଏ ଯେତେବେଳେ ଆସି ମଞ୍ଚପାଖରେ ଉପସ୍ଥିତ ହେଲେ, ସେତେବେଳେ ସଭା ଭାଙ୍ଗିଗଲା ଏବଂ ବକ୍ତା କୁଆଡ଼େ ଉଭେଇଗଲେ । ବଡ଼ ହତାଶ ଚିତ୍ତରେ ମିଷ୍ଟର କ୍ରୁ ନିଜ ହୋଟେଲକୁ ପ୍ରତ୍ୟାବର୍ତ୍ତନ କଲେ ।

ପରଦିନ ପ୍ରଭାତରେ ଅଳସ ଭଙ୍ଗୁ ଭଙ୍ଗୁ ତାଙ୍କର ଅବଶ୍ୟ ଟିକିଏ ବିଳମ୍ବ ହେଲା । ବାରଣ୍ଡାରେ ପ୍ରଭାତ ଫେରି କରୁଁ କରୁଁ ଅକସ୍ମାତ୍ ତାଙ୍କର ଦୃଷ୍ଟିଗୋଚର ହେଲା ଏକ ବିରାଟ ଶବ-ଶୋଭାଯାତ୍ରା । ମିଷ୍ଟର କ୍ୟୁ ଝାଡ଼ୁଦାରକୁ ପଚାରିଲେ,"ଏ ସୁଇପର୍, କିସ୍‌କା ଡେଥ୍ ହୋଗିୟା ହେ ?" ଝାଡ଼ୁଦାରର ଜବାବ "ମାଲୁମ ନହିଁ ସାହେବ ।"

ମିଷ୍ଟର କ୍ୟୁ ଆକାଶରୁ ପଡ଼ିଲେ—"ହାୟ୍ ହାୟ୍, ମାଲୁମ୍ ନହିଁ ସାହେବ ମରଗୟେ !! କେତନା ଆଶା କିୟାଥା ଉନକେ ସାଥ ଇଣ୍ଟରଭ୍ୟୁକେ ଲିୟେ !

ବୃଦ୍ଧ ଅଧ୍ୟାପକ କହିଚାଲିଥିଲେ, "ଯଦି ମିଷ୍ଟର କ୍ୟୁଙ୍କର ଏଇ କରୁଣ ଭ୍ରମଣକାହାଣୀ ଏଠାରେ ପାଠ୍ୟପୁସ୍ତକରୂପେ ମନୋନୀତ ହୋଇଥାନ୍ତା, ତେବେ ତ ଆଶ୍ଚର୍ଯ୍ୟ ହେବାର ନ ଥିଲା ।"

ଆମେ ଖୁବ୍ ଜୋରରେ ହସୁଥିଲୁଁ । ଉତ୍‌ମାନଙ୍କ ସମ୍ପର୍କରେ ବହୁ ହାସ୍ୟକର ଗଳ୍ପରୁ ଇଏ ଗୋଟିଏ । ହୁଏତ କେବଳ କାହାଣୀ ମାତ୍ର । କିନ୍ତୁ ଏହାର ଅନ୍ତର୍ନିହିତ ବକ୍ତବ୍ୟ ଯେ ସତ୍ୟ, ଏକଥା ବ୍ରିଟିଶ ଶାସନରେ ଭାରତବର୍ଷ ତ କମ୍ ଅନୁଭବ କରି ନାହିଁ !

ଏଇଭଳି ପରିସ୍ଥିତିରେ ଜାପାନୀମାନେ ଇଣ୍ଡୋନେଶିଆ ଅଧିକାର କଲେ । ଦେଶକୁ ମୁକ୍ତ କରିଦେବେ ସାମ୍ରାଜ୍ୟବାଦର ଯୂପକାଠରୁ, ପ୍ରଗତିଶୀଳ ପଥରେ ଆଗେଇନେବେ, ଏଇସବୁ ପ୍ରତିଶ୍ରୁତି ଦେଇ ସେମାନେ ଜନସାଧାରଣଙ୍କର ତଥାକଥିତ ସହଯୋଗ ଦାବି କଲେ । ଦେଶର ବହୁ ବିଶିଷ୍ଟ ଚିନ୍ତାଶୀଳ ବ୍ୟକ୍ତି ଏଇ ଧପ୍‌ପାବାଜିର ଶୀକାର ହୋଇଥିଲେ ।

ଇଣ୍ଡୋନେଶୀୟମାନଙ୍କ ହୃଦୟରେ ସେତେବେଳେ ଦୁରନ୍ତ ମୁକ୍ତିର ପିପାସା—ନିଜ ଦେଶକୁ ଶିକ୍ଷିତ କରିବାର, ସମୃଦ୍ଧ କରିବାର ଅଦମ୍ୟ ଅଭିଳାଷ। ଏହାର ନିର୍ମମ ସୁଯୋଗ ନେଲା ଫ୍ୟାସିଜିମ୍। ଜାପାନ ଘୋଷଣା କଲା—ଇଣ୍ଡୋନେଶିଆର ଯେଉଁ ଯୁବକଯୁବତୀମାନେ ବିଦେଶରୁ ଶିକ୍ଷା ଲାଭ କରି ଆସିବାକୁ ଚାହାନ୍ତି, ସେମାନେ ଆଗଭର ହୁଅନ୍ତୁ। ଟୋକିଓ ବିଶ୍ୱବିଦ୍ୟାଳୟର ଦ୍ୱାର ସେମାନଙ୍କ ପାଇଁ ଉନ୍ମୁକ୍ତ।

କେତେ ସହସ୍ର ଯୁବକଯୁବତୀଙ୍କୁ ଧରି ଦିନକର ପ୍ରତ୍ୟୁଷରେ ସୁରବାୟା ବନ୍ଦରରୁ ଦୁଇଟି ଜାହାଜ ଟୋକିଓ ଅଭିମୁଖରେ ଯାତ୍ରା କଲା। ବନ୍ଦରରେ ସେତେବେଳେ ହଜାର ହଜାର ବୃଦ୍ଧ ପିତା-ମାତା, ଭାଇଭଉଣୀ, ବନ୍ଧୁବାନ୍ଧବଙ୍କର ସେ କି ଉଦ୍‌ଗ୍ରୀବ ସମାବେଶ! ସେମାନଙ୍କର ବିପୁଳ ଆଶା ଆକାଂକ୍ଷାର ପ୍ରତୀକ ଏଇ ଯୁବକଯୁବତୀ ଦଳ ଦିନେ ପୁଣି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବେ। ଦେଶର ଭାଗ୍ୟାକାଶରେ ନୂତନ ସୂର୍ଯ୍ୟର ଅଭ୍ୟୁଦୟ ସେଇ ଶୁଭ ଦିନରେ ଅବଶ୍ୟମ୍ଭାବୀ। ଗଗନଭେଦୀ ଉତ୍‌ଫୁଲ୍ଲ ଅଭିବାଦନ ଓ ଶୁଭେଚ୍ଛାବର୍ଷଣ ଭିତରେ ଜାହାଜ ଦୁଇଟି ଉପକୂଳ ତ୍ୟାଗ କରି ସାଗର-ଅଭ୍ୟନ୍ତରରେ କ୍ରମଶଃ ଅଦୃଶ୍ୟ ହୋଇଗଲା।

ସେଇ ମୂହୂର୍ତ୍ତରେ କିନ୍ତୁ ଅଦୃଶ୍ୟ ହୋଇଥିଲା ଇଣ୍ଡୋନେଶୀୟ ଜୀବନ-ପ୍ରବାହର କେତେ ଗୁଚ୍ଛ ଗୁଚ୍ଛ ରଶ୍ମିରେଖା। କାରଣ, ଏହାପରର ଘଟଣା * ମହାଯୁଦ୍ଧକାଳୀନ ଜଘନ୍ୟ ଘଟଣାବଳୀର ଅନ୍ୟତମ ଦୃଷ୍ଟାନ୍ତ।

---

* Mitchener ଙ୍କ କୃତ Voice Of Asia ଗ୍ରନ୍ଥରେ ମଧ୍ୟ ଏ ଘଟଣାର ଉଲ୍ଲେଖ ରହିଛି।

ଜାପାନ-ଅଧିକୃତ ବିଭିନ୍ନ ଘାଟିରେ ବାଧ୍ୟତାମୂଳକ ଶ୍ରମ-ଶିବିରଗୁଡ଼ିକରେ ଦାସତ୍ୱର ଜଞ୍ଜିର ଲଗାଇ ଦିଆ ଯାଇଥିଲା ଏଇସବୁ ଶିକ୍ଷାର୍ଥୀ ଯୁବକମାନଙ୍କ ହାତରେ···ଏବଂ ଯୁବତୀମାନଙ୍କର ଦଶା ? ଯୁଦ୍ଧର ଅବସାନ ପରେ ଫ୍ୟାସିଷ୍ଟ ମିଲିଟାରୀ-ଅଧିକୃତ କେତେକ ବେଶ୍ୟାଖାନାଗୁଡ଼ିକରୁ ମୁଷ୍ଟିମେୟ ମରଣାପନ୍ନ ଝିଅଙ୍କୁ ଉଦ୍ଧାର କରାଯାଇପାରିଥିଲା ।

ଗୋଟିଏ ଜାତିର ଭାଗ୍ୟରେ କେତେ ଝଡ଼ ବହିଯାଇଛି ! ସାମ୍ରାଜ୍ୟବାଦକୁ ଫୁତ୍କାରରେ ଉଡ଼ାଇଦେଇ, ମହାଯୁଦ୍ଧର ଘନଘଟାକୁ ଚୂର୍ଣ୍ଣ କରିଦେଇ, ତଥାପି ଏ ଜାତି ଅଜର, ଅମର—ଆଜି ବି ଶୋଷଣମୁକ୍ତ ଶାନ୍ତିର ପ୍ରୟାସୀ ।

# କଂଗୁରୁ ନଓ କୋଆନ

ଇଣ୍ଡୋନେଶିଆର ପ୍ରାକୃତିକ ଜଳବାୟୁ ବଡ଼ ରୋମାଞ୍ଚକର । ବିଶେଷ କରି ମେଘସବୁ ସେଠାରେ ଏତେ ଚପଳମତି ଯେ, ହୁଏତ ଆପଣ ବେଶ୍ ସୁସ୍ପଷ୍ଟ ରୌଦ୍ରାଲୋକରେ ଛିଡ଼ା ହୋଇଛନ୍ତି ମନରେ କିଛି ଚିନ୍ତା ନ ରଖି, ବାସ୍, ପ୍ରଥମ ମିନିଟରେ ହଠାତ୍ ଖରାଟିକ ମଳିନ ହୋଇଯିବ, ଦ୍ୱିତୀୟ ମିନିଟରେ ଧୂଆଁ ଭଳି ଥଣ୍ଡା ଥଣ୍ଡା ଜଳୀୟ-କଣାରେ ଚାରି ଦିଗ ଭରି ହୋଇଯିବ, ତୃତୀୟ ମିନିଟରେ ରୀତିମତ ବର୍ଷା ! ଅନେକ ସମୟରେ ଏତିକେ ଫର୍ମାଲିଟି ବିନା ବି ବର୍ଷା ହୋଇପାରେ । ଆମ ଭାରତବର୍ଷରେ ତ ରୀତିମତ ପ୍ରୋଗ୍ରାମ-ଅନୁଯାୟୀ ବର୍ଷାର ନିର୍ଦ୍ଦିଷ୍ଟ ସମୟରେ ବହୁ ସାଜପୋଷାକ, ଉଚ୍ଚ-ରବ, ଘମାଘୋଟ ସହକାରେ ବର୍ଷାର ଆଗମନ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । କିନ୍ତୁ "ଆଷାଢ଼ସ୍ୟ ପ୍ରଥମ ଦିବସ"ର ରୋମାନ୍ସ ସେଠାରେ ନାହିଁ । ମନେ ହୁଏ, ଯେପରି ଇଣ୍ଡୋନେଶିଆର ଦ୍ୱୀପପୁଞ୍ଜ ଓ ପର୍ବତବନରାଜି ମେଘସବୁର ଖାସ ଘର ଏବଂ ଏଠାରୁ ହିଁ ସେମାନେ ପୃଥିବୀର ଅନ୍ୟ ପ୍ରାନ୍ତକୁ ଯାଆନ୍ତି, ପୁଣି ଯଥେଚ୍ଛା ଲେଉଟି ଆସନ୍ତି ।

ଅଧିକାଂଶ ସ୍ଥାନରେ ବର୍ଷର ତିନ ଶହ ଚଉଷଠି ଦିନଯାକ ଟିପ୍‌ଟିପ୍ ବର୍ଷା ହେଉଥାଏ । ଉଦାହରଣସ୍ୱରୂପ ଉଦ୍ୟାନମୟ ପଲ୍ଲୀ-ସହର ବୋଗୋର୍, ଯେଉଁଠାରେ ପ୍ରଥମ ଏସୀୟ ପ୍ରଧାନ-ମନ୍ତ୍ରୀମାନଙ୍କର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ।

ସୁତରାଂ ସେଦିନ ସକାଳେ ବେଶ୍ ପ୍ରଫୁଲ୍ଲଚିତ୍ତରେ ରାସ୍ତାରେ ପଦଚାରଣା କରୁଥିଲି, ଯେତେବେଳେ ଅନଭିଜ୍ଞ ମନରେ

ବର୍ଷାର କୌଣସି ଆଶଙ୍କା ନ ଥିଲା । ହୋଟେଲଠୁଁ କିଛି ଦୂର ଚାଲି-ଯାଇଥିଲି । ଏକ ସୁସଜ୍ଜିତ ବସ୍ତ୍ରଦୋକାନ । ସମସ୍ତ ବସ୍ତ୍ର ଇଣ୍ଡୋ-ନେଶୀୟ ଭାଷାରେ ଲିଖିତ । ଖଣ୍ଡିଏ ବସ୍ତ୍ରଉପରେ ନେହେରୁଙ୍କ ଛବି ଦେଖି ପଚାରି ବୁଝିଲି, ସେଇଟି ତାଙ୍କର ସଂକ୍ଷିପ୍ତ ଜୀବନ-କାହାଣୀ ।

ଦୋକାନର ମାଲିକ ଭଙ୍ଗା ଭଙ୍ଗା ଇଂରାଜୀ କହିପାରୁଥିଲେ । ମୁଁ ଭାରତୀୟ ବୋଲି ଜାଣିବାମାତ୍ରେ ଖୁବ୍ ଭଦ୍ରତାସହକାରେ ସେ କହିଲେ, "ଚେ ?" କୋପି ?" ଅର୍ଥାତ୍ ମୁଁ ଚାହା ·ପିଇବି କି କଫି ପିଇବି ।

କିଛି ସମୟଉତ୍ତାରୁ ପାର୍ଶ୍ୱବର୍ତ୍ତୀ ଦୋକାନରୁ 'କୋପି' ଆସିଲା । ମୁଁ ଯାହା ଆଶା କରିଥିଲି, ସେଇଆ । ଈଷତ୍ ଚିନି ପଡ଼ିଛି ଏବଂ ଦୁଧ ନାହିଁ ।

ମୁଁ ପ୍ରଥମେ ଇଣ୍ଡୋନେଶୀୟ ଭାଷା ପ୍ରୟୋଗ କଲି— "ସୁସୁ, ଗିନାସ୍ ।" ଅର୍ଥାତ୍ ଦୁଧ ଓ ଚିନି ଦରକାର ।

ଇଣ୍ଡୋନେଶିଆରେ ଇମିତି ବିନା ଦୁଧରେ ଚା, କଫି ପିଇବାର ଅଭ୍ୟାସ ସାର୍ବଜନୀନ । ମୋର ମନେ ହେଲା, ଚାହା କଫିର କାଟତି ଯେତିକି, ବିଅର୍ ଭଳି ମଦର ମଧ୍ୟ କାଟତି ପ୍ରାୟ ସେତିକି । ଭାରତୀୟ ମୁଦ୍ରାର ବିନିମୟ ହାର ଅନୁସାରେ ଗୋଟିଏ ବୋତଲ ବିଅର୍‌ର ଦାମ୍ ପ୍ରାୟ ଟଙ୍କାଟିଏ । କିନ୍ତୁ ସରକାରୀ ବିନିମୟ ହାରକୁ ଛାଡ଼ିଦେଲେ ଇଣ୍ଡୋନେଶିଆର ନିଜସ୍ୱ ମୁଦ୍ରା-ମୂଲ୍ୟରେ ଇଣ୍ଡୋନେଶୀୟମାନଙ୍କ ପାଇଁ ଏହା ପ୍ରାୟ ଉପରୋକ୍ତ ମୂଲ୍ୟର ଅଧାରୁ କମ୍ ପଡ଼ିବ । ରାସ୍ତା, ଘାଟ, ଚାରିଆଡ଼େ ଯେଉଁଠି ଚାହାଦୋକାନ, ତା ସହ ବିଅର୍ ନିଶ୍ଚୟ ଥିବ ।

ବସ୍ତ୍ରଦୋକାନର ମାଲିକଙ୍କୁ ବହୁତ ଧନ୍ୟବାଦ ଦେଇ ହୋଟେଲକୁ ପ୍ରତ୍ୟାବର୍ତ୍ତନ କଲି ; କାରଣ ଆଜି ଅଳ୍ପ ସମୟ-ପରେ ସମ୍ମିଳନୀ ଉଦ୍‌ଘାଟିତ ହେବାର କଥା । କିଛି ଦୂର ଆସିଛି, ଚମକି ଦେଖିଲି, ଖରା ଥାଉଁ ଥାଉଁ ଅଭ୍ରବିନ୍ଦୁ ଭଳି ବର୍ଷା ପଡ଼ିବାକୁ ଲାଗିଲା । ଆଶ୍ରୟ ନେବା ପୂର୍ବରୁ ପ୍ରାୟ ଓଦା ହୋଇସାରିଥିଲି । ତଥାପି ଗୋଟିଏ ଦୋକାନଉପରକୁ ଉଠିଗଲି—ଚିତ୍ରପଟ ଦୋକାନ । ବାନ୍ଦୁଂ, ଜାକର୍ତ୍ତା ଓ ଅନ୍ୟାନ୍ୟ ସହରର ରାସ୍ତାଘାଟରେ ଦେଖିଛି, ଏହା ଏକ୍ ସାଧାରଣ ଦୃଶ୍ୟ । ଏପ୍ରକାର ଚିତ୍ରଗୁଡ଼ିକ ମୁଦ୍ରିତ ନୁହେଁ—ସ୍ୱତନ୍ତ୍ର first; hand paintings-ଆହୁରି ମଧ୍ୟ ଦେଖିଛି, ଖୁବ୍ ସାଧାରଣ ଶ୍ରମିକମାନେ ବି ଏଇସବୁ ଦୋକାନ-ଆଗରେ ଭିଡ଼ କରି ଛବି କିଣୁଛନ୍ତି ।

ଏହା ପଛରେ ଏକ ବଡ଼ ତତ୍ତ୍ୱ ରହିଛି । ଲୋକମାନଙ୍କର ପାରମ୍ପରିକ ସାଂସ୍କୃତିକ ଚେତନା ସହ ତାଳ ଦେଇପାରିନି ସାଧାରଣ ଶିକ୍ଷା । ତେଣୁ ସାହିତ୍ୟ ଆଜିଯାଏ ଆଶାନୁରୂପ ବିକାଶ ଲାଭ କରି ପାରି ନାହିଁ । କିନ୍ତୁ ତା ବୋଲି ସଂସ୍କୃତି ଦିଗରେ ଯେଉଁ ପିପାସା, ତାର ଚରିତାର୍ଥତା କିପରି ଆସିବ ? ତେଣୁ ଚିତ୍ରବିଦ୍ୟା ଏତେ ଉନ୍ନତ ଓ ସର୍ବଜନପ୍ରିୟ ହୋଇପାରିଛି । ସାହିତ୍ୟ ପଢ଼ିବା-ପାଇଁ ଅକ୍ଷରଶିକ୍ଷା ଆବଶ୍ୟକ, କିନ୍ତୁ ଚିତ୍ରକୁ ଅନୁଭବ କରିବାପାଇଁ ହୃଦୟର ରୁଚିବୋଧହିଁ ଯଥେଷ୍ଟ ।

ସବୁଠୁଁ ଉଲ୍ଲେଖଯୋଗ୍ୟ କଥା, ଏସବୁ ଚିତ୍ରର ଅଧିକାଂଶ ହେଉଛି ଗାଁଗହଳର ବାସ୍ତବ ଚିତ୍ର, ପ୍ରାକୃତିକ ଦୃଶ୍ୟ—ବିଭିନ୍ନ ଦ୍ୱୀପର ବିଭିନ୍ନ ଶ୍ରେଣୀର ଲୋକସାଧାରଣଙ୍କର ଜୀବନଯାତ୍ରା ; ବୁଢ଼ାବୁଢ଼ୀ, ଯୁବକଯୁବତୀମାନଙ୍କର ବ୍ୟକ୍ତିତ୍ୱ ଚିତ୍ରଣ, ଉଚ୍ ଓ

ଜାପାନ ବିରୁଦ୍ଧରେ ସଂଗ୍ରାମର ଛବି ଇତ୍ୟାଦି । ଧର୍ମ ବା ଦେବ-ଦେବୀଙ୍କର ଛବି ପ୍ରାୟ ନାହିଁ । ପ୍ରତୀକଧର୍ମୀ ବା symbolic ଚିତ୍ରର ପ୍ରଚଳନ ମଧ୍ୟ ସାଧାରଣ ଦୋକାନମାନଙ୍କରେ ଯଥେଷ୍ଟ ।

—"ହାଲ୍ଲୋ ଇଣ୍ଡିଆ !"

ବଡ଼ କୋମଳ ଶ୍ରୁତିମଧୁର ଏକ କଣ୍ଠସ୍ୱର । ଆଠ ଦଶ ବର୍ଷର ସୁଦର୍ଶନା ଝିଅଟିଏ । ମୋ ପାଖକୁ ଆସି ଚଟାପଟ୍ ନୋଟ୍‌ବୁକ୍ କାଢ଼ି ପ୍ରଥମ ପୃଷ୍ଠାରେ ମୋ ଦସ୍ତଖତଟି ଦେଖାଇ ମୋ ଗୃହପଟେ ନାଚିଗଲା । ଅଳ୍ପ ଅଳ୍ପ ଇଂରାଜୀ ଶିଖିଛି । ସେଇଥିରେ ହସ, ଭଙ୍ଗୀ ସବୁ ମିଶାଇ ବୁଝାଇଦେଲା ଯେ ତା ଘରଟି ଖୁବ୍ ନିକଟରେ ଏବଂ ମୋତେ ସେଠାକୁ ନେଇ ଯାଇପାରିଲେ ତାର ବାପା ମା ବଡ଼ ଖୁସି ହେବେ । ଯାହା ହେଉ, ବର୍ତ୍ତମାନ ଯେ ସମୟ ନାହିଁ ସେକଥା ସେ ବୁଝିଲା ଏବଂ ଘର ଆଡ଼କୁ ନ ଯାଇ ମୋର ପଥ-ପ୍ରଦର୍ଶିକା ହୋଇ ସିଧାସଳଖ ସମ୍ମିଳନୀର ଉଦ୍‌ଘାଟନ ଉତ୍ସବ ଆଡ଼କୁ ନେଇ ଗଲା ।

ବିପୁଳ ଉତ୍ସାହ-ଉଦ୍ଦୀପନା ଭିତରେ ସେଦିନ ସମ୍ମିଳନୀ ଉଦ୍‌ଘାଟିତ ହେଲା । ପ୍ରଥମେ ଇଣ୍ଡୋନେଶିଆର ତତ୍କାଳୀନ ପ୍ରଧାନ-ମନ୍ତ୍ରୀ ଆଲି ଶାସ୍ତ୍ରୋ ଆମିଦ୍ ଯୋଯୋ ଶୁଭେଚ୍ଛା ଜ୍ଞାପନ କରି ଦେଶବାସୀଙ୍କ ତରଫରୁ ବିଦେଶାଗତ ପ୍ରତିନିଧିମାନଙ୍କୁ ସ୍ୱାଗତ-ସମ୍ଭାଷଣ ଜଣାଇଥିଲେ । ତାଙ୍କ ଭାଷଣରେ ଗଭୀର ଆନ୍ତରିକତା ଓ ମଙ୍ଗଳାକାଂକ୍ଷାର ସ୍ୱର ପରିସ୍ଫୁଟ ହୋଇଉଠିଥିଲା ।

ଡକ୍ଟର ସୁକର୍ଣ୍ଣଙ୍କର ଅନୁପସ୍ଥିତି ସତ୍ତ୍ୱେ ତାଙ୍କଦ୍ୱାରହିଁ ଅତଃପର ସମ୍ମିଳନୀ ଉଦ୍‌ଘାଟିତ ହେଲା । ରେକର୍ଡିଂ ସାହାଯ୍ୟରେ ଯେତେବେଳେ ତାଙ୍କର ଜଳଦଗମ୍ଭୀର କଣ୍ଠସ୍ୱର ଭାସିଆସିଲା,

ସେତେବେଳେ ସମସ୍ତ ପ୍ରତିନିଧି, ଦର୍ଶକ ଓ ଅନ୍ୟମାନଙ୍କ ମନରେ ସମ୍ମିଳନୀର ଗୁରୁତ୍ୱ ଯେପରି ଆହୁରି ବେଶୀଭାବରେ ଅନୁଭୂତ ହେଲା । ସେ କହିଥିଲେ—

"Above all do not be cynical or despairing ! For cynicism is the father of inaction and despair is the mother of defeat."

ଅନ୍ୟାନ୍ୟ ବହୁ ହୃଦୟସ୍ପର୍ଶୀ ବାଣୀଭିତରେ ସେ କହିଥିଲେ-

"We in Asia and Africa know much too little about each other. This is not entirely our fault, but is just one other evil effect of this greatest evil—Colonialism.

"......Now the opportunity has arrived to resume all contacts which had been interrupted a long time ago. Now the opportunity has arrived to break down all those artificial barriers and get to know each other once again."

ସମ୍ମିଳନୀର ଉଦ୍‌ଘାଟନ ଉତ୍ସବ ସମାପ୍ତ ହେଲା । ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ସ୍ୟୋସ୍ୟୋ ସାସ୍ତ୍ରୋଅମିଜୟୋ ହୋମାନ୍ ହୋଟେଲ୍‌କୁ ଆସି ପ୍ରତିନିଧି-ମାନଙ୍କ ସହ ନୈଶଭୋଜନ କରିଥିଲେ ଏବଂ ପ୍ରାୟ ଦୁଇ ଘଣ୍ଟାକାଳ ଡିପ୍ଲୋମାଟିକ୍ କୋର୍ର ସମସ୍ତ ସଭ୍ୟ ଓ କ୍ୟାବିନେଟ୍‌ର ଅନେକ ମନ୍ତ୍ରୀଙ୍କୁ ଧରି ବିଭିନ୍ନ ଦେଶର ପ୍ରତିନିଧିମାନଙ୍କ ସହ ବନ୍ଧୁତ୍ୱପୂର୍ଣ୍ଣ ଆଳାପ ଆଲୋଚନା କରିଥିଲେ ।

ଅପରାହ୍ଣରେ ସବୁଠୁଁ ସ୍ମରଣୀୟ ଘଟନା । ବାନ୍ଦୁଂ ସହରର ପଶ୍ଚିମ ପ୍ରାନ୍ତରେ ଏକ ଦିଗନ୍ତବିସ୍ତାରୀ ମୈଦାନରେ ଯାଇ ଆମେସବୁ ଏକଜୁଟ ହେଲୁଁ । ସେଠାରେ ଠୁଳ ହେଲେ ବାନ୍ଦୁଂ ଓ ଚତୁଃପାର୍ଶ୍ୱ ଅଞ୍ଚଳର ସହସ୍ର ସହସ୍ର ଛାତ୍ରଛାତ୍ରୀ । କିଣ୍ଡରଗାର୍ଟେନ୍‌ଠୁଁ ଆରମ୍ଭ କରି ସମସ୍ତ ସ୍କୁଲ, କଲେଜ, ମିଲିଟାରୀ ଏକାଡେମୀ, ସବୁ ସେଦିନ ଏସିଆ-ଆଫ୍ରିକା ଛାତ୍ର ସମ୍ମିଳନୀର ସମ୍ମାନରେ ବନ୍ଦ କରି ଦିଆଯାଇଥାଏ । ମେଘାଚ୍ଛନ୍ନ ଆକାଶ । ବହୁଦୂର ଦିଗ୍‌ବଳୟରେ ମେଘମଣ୍ଡିତ ପର୍ବତଶ୍ରେଣୀ । ଯଥାବିଧି କୁଚ୍‌କା ଆବାଜ ପରେ ଶୋଭାଯାତ୍ରା ଆରମ୍ଭ ହେଲା । ପ୍ରତିନିଧିମାନଙ୍କୁ ମଧ୍ୟଭାଗରେ ରଖି ଶୋଭାଯାତ୍ରାର ଆଗରେ ଏବଂ ପଶ୍ଚାତରେ ଧାଡ଼ିବନ୍ଧି ସ୍ଥାନୀୟ ଛାତ୍ରମାନେ । ମହାନଗରୀର ପ୍ରଧାନ ପଥ ଅତିକ୍ରମ କରି ଆମେ ଚାଲିଥାଉଁ । ରାସ୍ତାର ଉଭୟ ଦିଗରେ ସହସ୍ର ସହସ୍ର ହର୍ଷୋତ୍‌ଫୁଲ୍ଲ ନରନାରୀ । ସବା ଆଗରେ ଯେତେବେଳେ ଏସିଆ ଆଫ୍ରିକାର ସମସ୍ତ ଦେଶର ରାଷ୍ଟ୍ରୀୟ ପତାକାମାନ ଉଡ଼ାଇ ଅଭ୍ୟର୍ଥନା ସମିତିର ସ୍ୱେଚ୍ଛାସେବକମାନେ ଆଗେଇଯାଉଥାନ୍ତି, ସେତେବେଳେ ଅଜସ୍ର କଣ୍ଠରୁ ସ୍ୱର ଉଠୁଥାଏ—"ଇଦୁପ୍ପେ ଇଣ୍ଡିଆ, ଇଦୁପ୍ପେ ଚୀନ, ଇଦୁପ୍ପେ ଇଜିପ୍ଟ" ଇତ୍ୟାଦି । ଆମେ କହୁଥାଉଁ "ଇଦୁପ୍ପେ ଇଣ୍ଡୋନେସିଆ (ଇଦୁପ୍ପେ ଅର୍ଥ ଜୟ) ଇଣ୍ଡୋନେଶିୟା-ଇଣ୍ଡିଆ ସୋଦାରା ସୋଦାରା !" (ଅର୍ଥ ଭାଇ ଭାଇ । ସହୋଦର ଶବ୍ଦରୁ ସୋଦାରା) ।

ରାସ୍ତାର ଉଭୟ ପାର୍ଶ୍ୱରେ ଜନସାଧାରଣଙ୍କ ହାତରେ ଫେଷ୍ଟୁନ୍, ଶୋଭାଯାତ୍ରୀଙ୍କ ହାତରେ ମଧ୍ୟ ଫେଷ୍ଟୁନ୍ । ସବୁର ଭାଷା ଏକ—

ଔପନିବେଶିକବାଦ ଧ୍ୱଂସ ହେଉ । ପଞ୍ଚଶୀଳ ଦୀର୍ଘଜୀବୀ ହେଉ । ଯୁଦ୍ଧର ଅବସାନ ହେଉ । ଶାନ୍ତିର ଜୟ ହେଉ ।

କେତେ ମାଇଲ ପଥ ଅତିକ୍ରମ କରିଥିଲୁଁ, ଆନନ୍ଦାତିଶଯ୍ୟ-ଭିତରେ ସେକଥା ଆଜି ଆଉ ମନେ ନାହିଁ । ମଝିରେ ଝୁପ୍ ଝୁପ୍ ବର୍ଷା ହେଲା । ରାସ୍ତାକଡ଼ରୁ, ଅଟ୍ଟାଳିକାସବୁଉପରୁ ଅଜସ୍ର ପୁଷ୍ପବୃଷ୍ଟି ସହ ବାରିବିନ୍ଦୁ ମିଶିଗଲା ।

ସୌଦିନର ଏହି ଜୟଯାତ୍ରା ସତେଇଶଟି ଦେଶର ପ୍ରତିନିଧି-ମାନଙ୍କ ମନରେ ସେଦିନର ସନ୍ଧ୍ୟାକୁ ଅବିସ୍ମରଣୀୟ କରି ରଖିବ ।

# ନଭୁତ ପଲ୍ଲୀରେ

ରମଣୀୟ ଉଦ୍ୟାନମାଳା ଓ ଶ୍ରେଷ୍ଠ ଶ୍ରେଷ୍ଠ ଘରସବୁ ଟପି ଆମର କାର୍ ଆଗକୁ ଛୁଟି ଚାଲିଥାଏ । ଇଏସବୁ ଇଣ୍ଡୋନେଶିଆର କୃଷକପଲ୍ଲୀ । ବାନ୍ଦୁଂ ସହରର ବହୁ ଦୂରରେ ରହିଲାଣି । ଅଥଚ ବନ୍ଧୁ ଆହମଦ୍ ଆଫେନ୍ଦିଙ୍କ କାର୍‌ର ଗତି ସମଣ୍ଡଃ ଖିପ୍ରତର ହୋଇ ଚାଲିଛି । ମଝିରେ ତିନି ଥର କହି ସାରିଲିଣି, "ଧୀରେ ବନ୍ଧୁ, ଧୀରେ ।"

ଏକଥା ଶୁଣିବାମାତ୍ରେ ଈଷତ୍ ହସି ଆହମଦ୍ ସାହେବ ଆଉ ଟିକିଏ ଗତି ବଢ଼ାଇଦିଅନ୍ତି ।

ଏ ଜାତିଟାର ଲକ୍ଷଣହିଁ ଏଇଆ । ଦୁର୍ଦ୍ଧର୍ଷତା ଏମାନଙ୍କ ରକ୍ତଗତ ଗୁଣ; ଏମାନେ ଅଥଚ ଏତେ ବିନମ୍ରୀ, ଭଦ୍ର ଓ ସରଳ ଯେ, ସେ ସଂକ୍ରାନ୍ତରେ ଗଳ୍ପସବୁ ଶୁଣିଲେ ଶ୍ରଦ୍ଧା ଆସେ । କିନ୍ତୁ ଏ ଭଦ୍ର-ଲୋକଙ୍କର ଉଦ୍ଦେଶ୍ୟ କଣ ? ଆଉ କେତେ ଦୂର ମୋତେ ନେଇ-ଯିବେ ? ଆପାତତଃ ମିଛ କହିଲି, "ଦେଖନ୍ତୁ ଆହମଦ୍ ସାହେବ, ମୋତେ ଖୁବ୍ ମତ ଭୋକ କଲାଣି ।"

ଅଳ୍ପ ଆଗରେ ପଥଧାରରେ ଏକ ସୁନ୍ଦର ଶ୍ରେଷ୍ଠ ରେଷ୍ଟୁରାଁ । ରାସ୍ତା ସେଠାରେ ଗୃହ ଆଗରେ ବିଭକ୍ତ ହୋଇ ଚାରିଦିଗକୁ ଯାଇଛି । ଖୁବ୍ ଜୋରରେ କାର୍ ଦଉଡ଼ାଇନେଇ ଆହମଦ୍ ସଡ୍‌ସଡ୍ କରି ସେଠାରେ ବ୍ରେକ୍ ଦେଲେ ।

"ବୁଝିଲେ ଆଜ୍ଞା, ଦିନେ ଏ କାର୍‌ଖଣ୍ଡିକ ଗୋଟିଏ ଜିପ୍ ଗାଡ଼ି ଥିଲି । କିନ୍ତୁ ତିନିଟା ବଡ଼ ବଡ଼ ଆକ୍‌ସିଡେଣ୍ଟ୍ ହେବା ଉତ୍ତାରୁ

ମୁଁ ଆଉ ଏହାକୁ ଜିପ୍ ସ୍ୱଭାବରେ ବ୍ୟବହାର କରିବା ଶୁଭ ନୁହେଁ ବୋଲି ଇଞ୍ଜିନଟିକୁ ନେଇ କାଢ଼ି କରି ଆଣିଲି । ମୋ ଆଇଡ଼ିଆଟାକୁ ଆପଣ କିପରି ପସନ୍ଦ କରୁଛନ୍ତି ?"

ମୁଁ କହିଲି, "ଜିଆଣ୍ଡ୍ରିଫୁଲ୍ ଆଇଡ଼ିଆ ! କିନ୍ତୁ ବର୍ତ୍ତମାନ ଆପଣ ଯିପରିଭାବରେ ଇଞ୍ଜିନଟିକୁ ଚଳାଉଛନ୍ତି, ଚତୁର୍ଥ ଆକ୍ସିଡେଣ୍ଟ ପରେ ଏହା ବଳେବଳେ ହେଲିକୋପ୍ଟର୍ ହୋଇ ଉଡ଼ିଯିବ । ଆଉ ରୂପାନ୍ତରିତ କରିବା ଦରକାର ହେବ ନାହିଁ !"

ଆପେନ୍ଦି ରେଷ୍ଟୋରାଁ ଉପରକୁ ଉଠିଯାଇ ଏକପ୍ରକାର ପାଉଁରୁଟି ଆଣିଲେ, ଯାହାକି ଯଥେଷ୍ଟ ଚିନି ଓ କିସ୍‌ମିସ୍ ସହଯୋଗରେ ପ୍ରସ୍ତୁତ ହୋଇଥିଲା । ଏହିଭଳି ସୁଖାଦ୍ୟ ପାଉଁରୁଟି ସୁବିଆଡ଼େ ବେଶ୍ ଶସ୍ତାରେ ମିଳୁଥିବାର ଦେଖିଛୁ । ଆମେ ଭିତରକୁ ଯାଇ ରେଷ୍ଟୋରାଁର ଗୋଟିଏ କୋଣରେ ବସି ଖିଆପିଆ କଲୁଁ । ଅଦୂରର ପାହାଡ଼ସବୁ ଉପରେ କ୍ଷେତପରେ କ୍ଷେତଭରି ଗହମଗଛ । ମଝିରେ ମଝିରେ ସେହି ରେଷ୍ଟୋରାଁକୁ ଆସି ଶ୍ରମିକମାନେ ଚାଅର୍ ବା କଫି ପିଉଥାନ୍ତି ।

ଆମ ଦେଶର ବିଡ଼ିଭଳି ଇଣ୍ଡୋନେଶିଆରେ ଯେଉଁ ଧୂମପାନ-ଧୂଆଁ ଚଳେ ସେ ସ୍ତ୍ରୀ, ତାହାର ନାମ "କ୍ରେକୋକେତେକ୍" । ଗହମ ଗଛର ଖୋଳପାଦଦ୍ୱରରେ ବା ସାଧାରଣ କାଗଜରେ ମୋଡ଼ା ହୋଇଥାଏ । ବିଡ଼ିଠାରୁ କିନ୍ତୁ ବହୁ ଗୁଣରେ ଉତ୍କୃଷ୍ଟ । କେବଳ କଡ଼ା ପଦାର୍ଥ ନୁହେଁ, ଏହାଭିତରେ ବହୁ କିସମର ସୁସ୍ୱାଦୁ ମସଲା ଦିଆଯାଇଥାଏ, ଯାହାକି ନିକୋଟିନ୍‌ର ଖରାପ ଗୁଣକୁ କେତେକ ପରିମାଣରେ ହ୍ରାସ କରିଦିଏ ।

ସିଗାରେଟଗୁଡ଼ା ଭାରି କଡ଼ା । ହାଲୁକା ଧରଣର ବିଦେଶୀ ସିଗାରେଟସବୁର ଦାମ୍ ବହୁତ ଚଡ଼ା । ବନ୍ଧୁ ଆହମଦ୍

କଫିପାନ ଉତ୍ତାରୁ ମୋତେ ଗୋଟିଏ ସିଗାରେଟ ଧରାଇଦେଇ କହିଲେ, "କ୍ଷମା କରିବେ, ଏ ସିଗାରେଟ ଇଣ୍ଡୋନେଶୀୟ ଶ୍ରମଦ୍ୱାରା ପ୍ରସ୍ତୁତ, କିନ୍ତୁ ଇଣ୍ଡୋନେଶୀୟ ପୁଞ୍ଜିରେ ନୁହେଁ ।"

ବହୁ ସମୟରେ ବାଲିନିଜ୍ ଯୁବକଙ୍କ ମୁହଁରୁ ମୁଁ ଏଭଳି କଥା ଶୁଣିଛି । ଯାହାକୁ ସେମାନେ ଜାତୀୟ ଆତ୍ମଗ୍ଳାନି ବୋଲି ମନେ କରନ୍ତି, ଲୁଗୁଇବା ପରିବର୍ତ୍ତେ ତାହାକୁ ସର୍ବଦା ସେମାନେ ସ୍ପଷ୍ଟ କହିଦେଇଥାନ୍ତି ।

ଅଧଘଣ୍ଟା ଏଭିତରେ ବେଶ୍ ଅସରାଏ ବର୍ଷା ହୋଇଗଲା । ମୁଣ୍ଡରେ ଘୃତାପତ୍ର ଓ କଡ଼ିବୋଝେଇ ବସ୍ତା ନେଇ କେତେ ଜଣ ସ୍ତ୍ରୀଲୋକ ଆସି ରେଷ୍ଟୋରାଁରେ ବିଶ୍ରାମ ନେଲେ । କଥାରେ କଥାରେ ସେମାନଙ୍କର ହସ । ଆହମଦ୍ ଆଫେନ୍ଦି ସେମାନଙ୍କ ସହ ତାଙ୍କ ମାତୃଭାଷାରେ କଥାବାର୍ତ୍ତା ଆରମ୍ଭ କଲେ ଏବଂ ମୋତେ କହିଲେ, "ସେମାନେ ପଚାରୁଛନ୍ତି, ଭାରତବର୍ଷରେ କେଉଁଠି ପ୍ରଭୁ ଗରୁଡ଼ ଅଛନ୍ତି ?"

ମୁଁ ଉତ୍ତର ଦେଲି, "ପୁରାଣରେ ।" ଆଫେନ୍ଦି ସେମାନଙ୍କୁ ବୁଝାଇବାର ଚେଷ୍ଟା କଲେ । କିନ୍ତୁ ନିଜ ନିଜଭିତରେ ବହୁ ଆଲୋଚନା କରି ସେମାନେ ବୋଧ ହୁଏ ସାବ୍ୟସ୍ତ କଲେ ଯେ, ମୁଁ ଖାଣ୍ଟି ଭାରତୀୟ ନୁହେଁ କିମ୍ବା ଗରୁଡ଼ଙ୍କ ରହସ୍ୟ ସେମାନଙ୍କୁ କହି-ଦେବାକୁ ପ୍ରସ୍ତୁତ ନୁହେଁ ।

"ସେଲମତ୍ ପାଗି" (ସକାଳର ନମସ୍କାର) କହି ସେମାନେ ବିଦାୟ ନେଲେ । ଭାରତୀୟ ଧର୍ମଶାସ୍ତ୍ରରେ ଗରୁଡ଼ର ଭୂମିକା ଗୁରୁତ୍ୱପୂର୍ଣ୍ଣ, ସନ୍ଦେହ ନାହିଁ, ତେବେ ଇମିତି କିଛି ନୁହେଁ । ହେଲେ-କେଉଁ ଶୁଭ ମୁହୂର୍ତ୍ତରେ ଗରୁଡ଼ ଏ ଦ୍ୱୀପକୁ ବିଜେ ହୋଇଥିଲେ

କେଜାଣି, ଆଜ ଗରୁଡ଼ଙ୍କୁ ରାଷ୍ଟ୍ରର ପ୍ରତୀକ କହିଲେ ଅତ୍ୟୁକ୍ତି ହେବ ନାହିଁ । ବଡ଼ ବଡ଼ କୋଠାରେ ଗରୁଡ଼ର ଚିତ୍ର । ଲମ୍ବ ଥଣ୍ଟ, ବିସ୍ତୃତ ଦୁଇ ଡେଣା ଏବଂ ଗୋଲ ମୁଣ୍ଡବିଶିଷ୍ଟ ଏହି ବିଶାଳକାୟ ସ୍ୱର୍ଗୀୟ ପକ୍ଷୀର ନାମାନୁସାରେ କେତେ କେତେ କମ୍ପାନୀ, କାରଖାନାର ନାମ । ଇଣ୍ଡୋନେଶୀୟ ଜାତୀୟ ବିମାନ କମ୍ପାନୀର ନାମ, ଗରୁଡ଼ ଏୟାରୱେଜ୍ ।

ଆହମଦ୍ କହିଲେ, ଆଜ ଅଳ୍ପ ଦୂରରେ ତାଙ୍କର ଜଣେ ବନ୍ଧୁଙ୍କର ଘର । ସେଠାକୁ ଗଲେ ସେ ବଡ଼ ଖୁସି ହେବେ । ମୋର ମଧ୍ୟ ବିଶେଷ ଆଗ୍ରହ ଥିଲା ପଲ୍ଲୀଅଭ୍ୟନ୍ତରକୁ ଯିବାପାଇଁ । ପ୍ରତିନିଧି ଦଳଙ୍କର କଡ଼ା ନିର୍ଘଣ୍ଟଭିତରେ ଆବଦ୍ଧ ରହିଲେ ଏପରି ଅଭିଜ୍ଞତା ଅର୍ଜନ ହୋଇପାରିବ ନାହିଁ, ସେସବୁପାଇଁ ବ୍ୟକ୍ତିଗତ-ଭାବରେ ସୁବିଧା କରିନେବାକୁ ପଡ଼ିବ । ଏ ବିଷୟରେ ମୁଁ ବିଶେଷ-ଭାବରେ ସଜାଗ ଥିଲି ।

ଆଉର ପ୍ରାୟ ପନ୍ଦର ମିନିଟ ବେପରୁଆ ଡ୍ରାଇଭିଂ କରି ଆହମଦ୍ ଏକ ସୁନ୍ଦର ବାଂଲୋ ଆଗରେ ଅଟକିଲେ ।

"ହାଲୋ ମିଷ୍ଟର ଆକ୍‌ସିଡେଣ୍ଟ୍ ! ତୁମର ଏ ବନ୍ଧୁଟି କିଏ ?" ଜଣେ ପ୍ରୌଢ଼ ଭଦ୍ରଲୋକ ହସି ହସି ପଦାକୁ ବାହାରିଆସିଲେ— ଆଫେନ୍ଦିଙ୍କ ବନ୍ଧୁପିତା । ବନ୍ଧୁ କିନ୍ତୁ ଘରେ ନ ଥିଲେ । ପ୍ରୌଢ଼ ଭଦ୍ରଲୋକଙ୍କ ସହ ପରିଚୟ ହେଲାରୁ ସେ ବଡ଼ ଖୁସି ହୋଇଗଲେ ।

"ପ୍ରଥମେ କହନ୍ତୁ, ଆଫେନ୍ଦି ଆପଣଙ୍କୁ କୌଣସି ଦୁର୍ଘଟଣାର ସମ୍ମୁଖୀନ କରାଇ ନାହିଁ ତ ? ଚାରି ପାଞ୍ଚ ବର୍ଷରେ ମଟରଡ୍ରାଇଭିଂ-ଭିତରେ ସିଏ ଅନ୍ତତଃ ଅଢ଼େଇ ଡଜନ ଥର ଛୋଟବଡ଼ ଦୁର୍ଘଟଣା

ଘଟାଇଛନ୍ତି । ଅଥଚ ଆପଣ ଶୁଣିଲେ ମୋତେ ଧନ୍ୟବାଦ ଦେବେ, ମୋର ପାର୍ଦ୍ଧ ତିରିଶ ବର୍ଷର ମଟର ଚଳାଇବାଭିତରେ ଥରୁଟେ-ମାତ୍ର ଦୁର୍ଘଟଣା ହୋଇଥିଲା ଏବଂ ଆପଣ ମୋତେ ସଙ୍ଗେ ସଙ୍ଗେ ଧନ୍ୟବାଦ ଦେବା ଉଚିତ, ଯେହେତୁ ଯେତେବେଳେ ସେ ଦୁର୍ଘଟଣାଟି ଘଟିଥିଲା, ସେତେବେଳେ ମୋ ମଟରଟି ଗ୍ୟାରେଜ-ଭିତରେ ଚୁପ୍‌ଚାପ୍ ଶାନ୍ତଭାବରେ ବିଶ୍ରାମ କରୁଥିଲା । ମାତ୍ର ମୋ ପ୍ରିୟତମା ସ୍ତ୍ରୀ ଗୋଟିଏ ଅଣ୍ଡିରାବରେଲ ସାହାଯ୍ୟ କରି ତାକୁ ଗ୍ୟାରେଜଭିତରକୁ ଛଡ଼ନେଇ ଯାଉଁ ଯାଉଁ ନିଜେ ମଟର-କାର୍‌ଟିଦ୍ୱାରରେ ପ୍ରବଳ ଧକ୍‌କା ଖାଇ ପଡ଼ିଗଲେ । ମଟରଟି-ଉପରେ ଅଭିମାନ କରି ମୁଁ ତାହା ବନ୍ଦ କରିଦେଲି ।"

ନିଜ ରସିକତାରେ ନିଜେ ଡାକବାଜ ଯନ୍ତ୍ରରେ ହସିଲା ଭଳି ଉଚ୍ଚ ଶବ୍ଦ କରି ସେ ହସୁଥିଲେ । ମୁଁ ମଧ୍ୟ ଭାବୁଥିଲି, ଶତ ଝଡ଼ଝଞ୍ଜା ଭିତରେ ବି ଏ ଜାତିର ଆତ୍ମା କେଡ଼େ ଅମଳିନ, ଉଜ୍ଜ୍ୱଳ କେତେ !

ସେଠାରେ ମଧ୍ୟ କିଛି ଖାଇବାକୁ ବାଧ୍ୟ ହେଲି । ତାପରେ ଗାଁ ବୁଲି ବାହାରିଲୁ । ଭଦ୍ରଲୋକ, ତାଙ୍କ କନ୍ୟା କୁମାରୀ ମୁକ୍ତାବତୀ ଓ ଆହମଦ୍ ଆଫେନ୍ଦି ନିଜ ନିଜଭିତରେ ପରାମର୍ଶ କରି ମୋତେ ଭାରତବର୍ଷର ଗାଁଗହଳି, କୃଷକସମ୍ପ୍ରଦାୟ ଓ ଜାତିତତ୍ତ୍ୱ ସମ୍ବନ୍ଧରେ ନାନା ପ୍ରଶ୍ନ ପଚାରୁଥାନ୍ତି ।

ଘରଗୁଡ଼ିକ ଖୁବ୍ ଛୋଟ ଛୋଟ, କିନ୍ତୁ ବେଶ୍ ସୁଦର୍ଶନ ମଡ଼େଲ୍‌ରେ ତିଆରି । ଅନେକ ଘରର କାନ୍ଥ ବୋଇଲେ କାଠ ବାଉଁଶ ଉପରେ ପଲସ୍ତରା । ଉପରେ ଛୋଟ ଛୋଟ ଟାଇଲ ଛପରି । ଅନେକାଂଶରେ ଚୈନିକ ଷ୍ଟାଇଲର ଗଠନ । ଯେଡ଼େ ଗରିବଘର ହୋଇଥିଲେ ବି ପ୍ରାଙ୍ଗଣରେ ଛୋଟ ଉଦ୍ୟାନଟିଏ ପରିଚ୍ଛନ୍ନ ରୁଚିବୋଧର ପରିଚୟ ବହନ କରେ ।

ଅଧିକାଂଶ କୃଷକ କ୍ଷେତମଜୁର ବା ଅଳ୍ପସଳ୍ପ ଜମିର ଅଧିକାରୀ । ଯେଉଁମାନେ ସାମାନ୍ୟ ଜମିର ଅଧିକାରୀ, ସେମାନେ ବି ଉଦ୍‌ବୃତ୍ତ ସମୟରେ ଆଖୁକ୍ଷେତ, ଗୃହାବଗିଚ୍ଛ ବା ରବର-ବଣରେ କାମ କରି କିଛି ଉପାର୍ଜନ କରନ୍ତି । ଇଣ୍ଡୋନେଶୀୟ ଜନ-ସଂଖ୍ୟାର ଶତକଡ଼ା ପଚସ୍ତରି ଭାଗ ହେଉଛି କୃଷକ; ଯେଉଁମାନେ କି ତିନି ଶତାବ୍ଦୀ ଧରି ଅକଥନୀୟ ଶୋଷଣ ଓ ଅତ୍ୟାଚାରଭିତରେ ସଢ଼ିଆସୁଥିଲେ । ଏମାନଙ୍କର ଉନ୍ନତି ସକାଶେ, ଆଧୁନିକ କୃଷି-ବିଜ୍ଞାନର ପ୍ରୟୋଗ ସକାଶେ କୌଣସି ଉଦ୍ୟମ ଡଚ୍ ସରକାର କରି ନ ଥିଲେ । କରିବାପାଇଁ ମଧ୍ୟ ପୁଞ୍ଜି ନ ଥିଲା, କାରଣ ଇଣ୍ଡୋନେଶୀୟ ଜାତୀୟ ଆୟରୁ ଶତକଡ଼ା ପନ୍ଦର ଭାଗ ମାତ୍ର ଇଣ୍ଡୋନେଶିଆପାଇଁ ଖର୍ଚ୍ଚ ହେଉଥିଲା ଏବଂ ଜନସଂଖ୍ୟାର ମୋଟେ ୪ ଭାଗ ଡଚ୍ ଓ ଅନ୍ୟ ୟୁରୋପୀୟମାନେ ଅବଶିଷ୍ଟ ପଞ୍ଚାଶୀ ଭାଗ ନେଉଥିଲେ । *

ଗୁଲି ଗୁଲି ଆମେ ଅନେକ ଦୂର ଆଗେଇଆସିଥିଲୁଁ ।

"ଏଇ ଯେ ମୀନାର ମା !" ଭଦ୍ରଲୋକଟି ଜଣେ ବୁଢ଼ୀକୁ ଲକ୍ଷ୍ୟ କରି କହିଲେ । ବୁଢ଼ୀ ଧୀରେ ଧୀରେ ଆଗେଇଆସୁଥିଲା । ବୟସ ନିଶ୍ଚୟ ଅଶୀରୁ ବେଶୀ ବୋଲି ମନେ ହେଉଥିଲା । ତଥାପି ଆଖିରେ ବଡ଼ ତୀକ୍ଷ୍ଣ ଦୃଷ୍ଟି । ହାତର ବାଡ଼ିଟାକୁ ଠୁକ୍‌ଠୁକ୍ କରି ସେ କହିଲା, "ଆପଣମାନେ କାହାକୁ ଖୋଜୁଛନ୍ତି ?" ପ୍ରୌଢ଼ ଭଦ୍ର-ଲୋକଟି ନିଜର ପରିଚୟ ଦେଲେ ଏବଂ ମୋର ମଧ୍ୟ । ବୁଢ଼ୀ କହିଲା, "ସମସ୍ତେ ମନେ କରନ୍ତି ମୋ ଆଖି ଠିକ୍‌ଠାକ୍ ଅଛି

* "Working Class in the Struggle for National Liberation" published by World Federation of Trade Union.

ବୋଲି, କିନ୍ତୁ ମୁଁ ଏପରିକି ମଣିଷକୁ ମଇଁଷି ବୋଲି ଭୁଲ୍ କରି-ପାରେଁ । ସୁତରାଂ ତୁମକୁ ଚିହ୍ନିପାରିଲି ନାହିଁ ବୋଲି କିଛି ମନେ କରିବ ନାହିଁ । କିନ୍ତୁ ଘରଠାରୁ ଆସିଥିବା ଏ ପିଲାଟିକୁ ମୁଁ ଭଲ କରି ଦେଖିବି ।"

ବୁଢ଼ୀ ମୋ ପାଖକୁ ଲାଗିଆସି ମୋ ମୁହଁରେ ଓ ମୁଣ୍ଡରେ ହାତ ବୁଲାଇ ହଠାତ୍ ଅପେକ୍ଷାକୃତ ଜୋରରେ କାନ୍ଦି ପକାଇଲା । ଆଫ୍ରେଡ଼ ବୁଝାଇଦେଲେ, "ସେ କହୁଛି, ତୁମ ମୁଣ୍ଡର ବାଳଗୁଡ଼ିକ ତା ପୁଅର ମୁଣ୍ଡବାଳ ଭଳି ହୋଇଛି ।" ମୋତେ ବିସ୍ମିତ କରି, ଆଉ କିଛିମାତ୍ର ନ କହି ବୁଢ଼ୀ ଖୁବ୍ କ୍ଷିପ୍ର ଗତିରେ ଲେଉଟିପଡ଼ି ଚାଲି-ଗଲା । ସେ ଗଳିମୁଣ୍ଡରେ ଅଦୃଶ୍ୟ ହୋଇଯିବାପରେ ଏକ ଦୀର୍ଘ ନିଶ୍ୱାସ ତ୍ୟାଗ କରି ପ୍ରୌଢ଼ ଭଦ୍ରଲୋକଟି କହିଲେ, "ଆଜି ସମଗ୍ର ଦିନ ଆଉ ମିନାମାକୁ କେହି ପଦାରେ ଦେଖିବେ ନାହିଁ । ଅବା ଘରର ଅର୍ଗଳ ବନ୍ଦ କରିଦେବ ।"

ମିନାମାର ଇତିହାସ ହେଉଛି, ତାର ସ୍ୱାମୀର ମୃତ୍ୟୁପରେ ସେ ତାର ଏକମାତ୍ର ଝିଅକୁ ଜଣେ ଯୁବକ ସହ ବିବାହ ଦେଇ ସେମାନଙ୍କ ପାଖରେ ରହିଥିଲା ଏବଂ ଜୁଆଁଇଟିକୁ ପୁଅ ବୋଲି ଡାକୁଥିଲା । ଜାପାନୀ ଆକ୍ରମଣବେଳେ ଜୁଆଁଇଟି ନିହତ ହେଲା ଏବଂ ମିନାର ପତ୍ତା ଆଜିଯାଏ ମିଳି ନାହିଁ ।

ଭଦ୍ରଲୋକ ଓ ତାଙ୍କ ଝିଅଙ୍କଠୁଁ ବିଦାୟ ନେଇ ମୁଁ ଓ ଆଫ୍ରେଡ଼ କାର୍‌ରେ ଆସି ବସିଲୁଁ । ଆକାଶ ସେତେବେଳେ ବି ମେଘାଚ୍ଛନ୍ନ । ଏକାନ୍ତ ଉଦାସ ମାନସପଟରେ ମୋର ବାରମ୍ବାର ଅଙ୍କା ହେଉଥିଲା ଗୋଟିଏ ଚିତ୍ର । ଏତେବେଳେ ପଛରେ ଛାଡ଼ି ଆସିଥିବା ସେହି ଶୁପ୍ତାସୁନବଡ଼ ପଲ୍ଲୀର ଏକ ନିଭୃତ କୁଟୀରରେ ଅର୍ଗଳ ବନ୍ଦ କରି ବୁଢ଼ୀଟିଏ ବସିଥିବ । ତାର କେହି ନାହିଁ । ଶୋକ ପ୍ରକାଶ କରିବାପାଇଁ ତା ଆଖିରୁ ଅଶ୍ରୁ ବି ସରିଯାଇଛି ।

## ମହାଜାତିର ଜୀବନ-ପ୍ରଭାତ

"ଆମେ ଚାହୁଁ ସମଗ୍ର ଜାତିର ସମୃଦ୍ଧି, ପ୍ରତ୍ୟେକ ମଣିଷ ଯେପରିକି ପାଇବ ପର୍ଯ୍ୟାପ୍ତ ଆହାର, ଦରକାରମାଫିକ ପୋଷାକ-ପରିଚ୍ଛଦ, ପ୍ରତ୍ୟେକ ମଣିଷ ଜାଣିବ ଯେ, ମାତୃଭୂମି ତାକୁ ଆଦରରେ ପାଳନ କରୁଛି।.........ଆମେ ଯେପରି ସଭ୍ୟ ଉପାୟରେ ପରସ୍ପରପ୍ରତି ଶ୍ରଦ୍ଧା ସହକାରେ ଧର୍ମାଚରଣ କରିବାକୁ ସମର୍ଥ ହେଉଁ।"*

ଡକ୍ଟର ସୁକର୍ଣ୍ଣଙ୍କର ଏହି ଆବେଦନପତ୍ରରେ ଆଜ ସମଗ୍ର ଜାତିର ଗଭୀର ସମର୍ଥନ ରହିଛି। ସଭିଏଁ ହୃଦୟଙ୍ଗମ କରିଛନ୍ତି, ପରାଧୀନତା ଯେତେ ଭୟଙ୍କର ଅନିଷ୍ଟ କରିଥାଉ ନା କାହିଁକି, ଅଫୁରନ୍ତ ଐଶ୍ୱର୍ଯ୍ୟର ଭଣ୍ଡାର ଏକ ଜାତିର ନବଜନ୍ମ ଆଗରେ ସେସବୁ କେବେହେଲେ ଅପୂରଣୀୟ ନୁହେଁ। କିନ୍ତୁ ଏଥିପାଇଁ ଯାହା ସର୍ବାପେକ୍ଷା ଆବଶ୍ୟକ, ତାହା ହେଉଛି ପରସ୍ପରଭିତରେ ଅଚ୍ଛେଦ୍ୟ ସହଯୋଗ। ଅତୀତର ଇତିହାସରେ ଯେକୌଣସି ଜାତିର ଭାଗ୍ୟରେ ଏହା କେତେଦୂର ସମ୍ଭବ ହୋଇଛି ନ ହୋଇଛି, ଗବେଷଣାର ବିଷୟ; କିନ୍ତୁ ଜନସାଧାରଣଙ୍କ ଗଣତାନ୍ତ୍ରିକ ଚେତନାର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ତାହା ଯେ କ୍ରମଶଃ ସମ୍ଭବପର ଓ ଅପରିହାର୍ଯ୍ୟ, ଏହି ସତ୍ୟ ଇଣ୍ଡୋନେସିଆର ଜାଗ୍ରତ ଜନ-ସାଧାରଣ ଆଜ ମର୍ମେ ମର୍ମେ ଉପଲବ୍ଧି କରୁଛନ୍ତି।

---

* "Nationalism and Revolution in Indonesia" by George Kahin.

ପାରସ୍ପରିକ ସହଯୋଗର ଏଇ ନୀତି ଇଣ୍ଡୋନେଶିଆରେ ଗୋଟଙ୍ଗ ରୋଜୋଙ୍ଗ (Gotong Rojong) ନାମରେ ସର୍ବଜନବିଦିତ ।

କିନ୍ତୁ ଇଣ୍ଡୋନେଶିଆର ରାଜନୀତିରେ ଆଜ ଯେଉଁସବୁ ଆକସ୍ମିକ ଝଡ଼ର ଆବିର୍ଭାବରେ ଦୁନିଆର ଜନସାଧାରଣ ବିସ୍ମିତ ହୋଇଯାଇଛନ୍ତି, ସେସବୁ ସମ୍ଭବ ହେଉଛି କିପରି, ଏହାହିଁ ପ୍ରଶ୍ନ । ଅଗ୍ନିଝଡ଼ର ପ୍ରଳୟଙ୍କର ଅତ୍ୟାଚାରଭିତରେ ଯେଉଁ ଜାତି ପରସ୍ପର ହାତ ମିଳାଇ ଶାନ୍ତିର ଦୁର୍ଗ ତୋଳିଛନ୍ତି, ପାରସ୍ପରିକ ଐକ୍ୟର ନୀତିକୁ ମାନିନେବାପାଇଁ ଯେଉଁ ଦେଶରେ ଏତେ ଜନପ୍ରିୟ ଆନ୍ଦୋଳନ, ସେଦେଶରେ ଆଜ ଗୃହଯୁଦ୍ଧର ସୂଚନା କାହିଁକି ?

ଇଣ୍ଡୋନେଶିଆକଥା ଛାଡ଼ିଦିଅନ୍ତୁ, ପୃଥିବୀର ଯେକୌଣସି ନବଜାତ ସ୍ୱାଧୀନ ରାଷ୍ଟ୍ରର ଇତିହାସରେ ଏଭଳି ସମସ୍ୟା ଅଳ୍ପ-ବହୁତେ ଅନିବାର୍ଯ୍ୟ ହୋଇପଡ଼ୁଛି ।

ଆଉ ଇଣ୍ଡୋନେଶିଆର ଇତିହାସକଥା ତ ଅତ୍ୟନ୍ତ ଘଟଣା-ବହୁଳ, ଚମକପ୍ରଦ ଏବଂ ବହୁ ନିଜସ୍ୱ ବିଶେଷତ୍ୱରେ ପରିପୂର୍ଣ୍ଣ । ଜନସାଧାରଣ ଆଜ ଅପେକ୍ଷାକୃତ କ୍ଷିପ୍ର ଗତିରେ ପ୍ରଗତିଶୀଳ ମାର୍ଗ ଅନୁସରଣ କରୁଥିଲେ ମଧ୍ୟ ଏବଂ ଅନ୍ଧବିଶ୍ୱାସଉପରେ ପ୍ରତିଷ୍ଠିତ ଦର୍ଶନର ଭିତ୍ତିଭୂମି ଦୁର୍ବଳ ହୋଇଆସୁଥିଲେ ମଧ୍ୟ ଏବେ ବି ଧର୍ମନୈତିକ ସ୍ଲୋଗାନ୍‌ର ଯୁଗ ଅତୀତ ହୋଇ ନାହିଁ । ସର୍ବ-ଇଣ୍ଡୋନେଶୀୟ ଦଳଗୁଡ଼ିକୁ ଛାଡ଼ିଦେଲେ ବି ଦେଶର ବିଭିନ୍ନ ସ୍ଥାନରେ, ବିଶେଷକରି ସହରନଗରମାନଙ୍କରେ ଧର୍ମନାମରେ ଅଜସ୍ର ଅନୁଷ୍ଠାନ ଏବଂ ଅଧିକାଂଶ ରାଜନୈତିକ ଉଦ୍ଦେଶ୍ୟରେ

ପଡ଼ିଥିଲତ । ଦେଖି ଆଶ୍ଚର୍ଯ୍ୟ ହୋଇଥିଲି, ଗ୍ରାମସମାଜଭିତରେ ମଧ୍ୟ ସେଇପରି ଧର୍ମଗତ ଅନୁଷ୍ଠାନର ପ୍ରାଚୁର୍ଯ୍ୟ ।

ତିନ ଶତାବ୍ଦୀର ଦଖଲ-ଭୋଗଭିତରେ ଡଚ୍ ସରକାର ଅନ୍ତତଃ ଏତିକି କରିବାରେ ସମର୍ଥ ହୋଇଥିଲେ ଯେ, ଦଳେ ଲୋକ ବାହାରି ସର୍ବଦା ଯେକୌଣସି ପ୍ରଗତିଶୀଳ ଆନ୍ଦୋଳନର ବିରୋଧ କରିବେ ଏବଂ ଧର୍ମନାମରେ, ଇସ୍‌ଲାମ୍‌ର ଦୋହାଇ ଦେଇ ତାଙ୍କର ଭାଇମାନଙ୍କ ଭିତରେ ଏକତାର ଦୃଢ଼ତାକୁ କ୍ଷୁଣ୍ଣ କରିବେ । ଦେଶ ଅନେକ ସମୟରେ ଯେଉଁମାନଙ୍କ ରାଜନୈତିକ ଅଭିନୟରେ ବିମୁଗ୍ଧ ହୋଇ ସେମାନଙ୍କୁ ନେତୃତ୍ୱର ସମ୍ମାନ ଦେଇଥିଲେ, ସମୟର ସ୍ରୋତରେ ସେମାନଙ୍କର ପ୍ରକୃତ ସ୍ୱରୂପ କାର୍ଯ୍ୟକ୍ଷେତ୍ରରେ ପ୍ରମାଣିତ ହୋଇଯାଇଛି । ଭାରତ ଦେଶବାସୀମାନେ ହତବୁଦ୍ଧି ହୋଇ ଯାଇଛନ୍ତି । କିନ୍ତୁ ଇଣ୍ଡୋନେଶିଆର ଜନସାଧାରଣଙ୍କର ଏକ ବଡ଼ ବିଶେଷତ୍ୱ ହେଉଛି, ବ୍ୟକ୍ତିପୂଜାର ମୋହ ସେମାନଙ୍କ ନିକଟରେ ବହୁତ କମ୍ । ଅଧିକାଂଶ ତ ଲଢ଼େଇ କରିଛନ୍ତି, ଏବଂ ଅଧିକାଂଶ ବୃଦ୍ଧ, ଯୁବକ, ପ୍ରୌଢ଼ ଓ ସ୍ତ୍ରୀଙ୍କ ଦେହରୁ ଅସ୍ତ୍ରର ଦାଗ ତ ଏପର୍ଯ୍ୟନ୍ତ ଲିଭି ନାହିଁ, ସୁତରାଂ ସେମାନେ ଜାଣିଛନ୍ତି, ସ୍ୱାଧୀନତାର ମୂଲ୍ୟ ଦେଇଛନ୍ତି କିଏ । ବ୍ୟକ୍ତିଗତ ନେତୃତ୍ୱର ସ୍ୱୟଂସିଦ୍ଧ ଦୈବ-ପ୍ରତିଭାର ଐନ୍ଦ୍ରଜାଲିକ ଶକ୍ତିବଳରେ ନୁହେଁ—ଦେଶବାସୀ ଜନସାଧାରଣଙ୍କର ବର୍ଷବର୍ଷ ବ୍ୟାପୀ ଆପୋଷବର୍ଜିତ ଅବିରାମ ସଂଗ୍ରାମ ଫଳରେ, ସହସ୍ର ସହସ୍ର ସନ୍ତାନଙ୍କର ସଚେତନ ଆତ୍ମୋତ୍ସର୍ଗଦ୍ୱାରା ସ୍ୱାଧୀନତା ଆସିଛି । ତେଣୁ ସେମାନେ ପ୍ରଗତିର ପ୍ରତିବନ୍ଧକ ବୋଲି ମନେ କରୁଥିବା ଯେକୌଣସି ବ୍ୟକ୍ତିବିଶେଷ ବା ଗୋଷ୍ଠୀକୁ ଅଚିରେ ରାଜନୈତିକ କ୍ଷମତାରୁ ଅପସାରିଦେବାକୁ ସଙ୍କୋଚ କରି ନାହାନ୍ତି । ଗତ ନିର୍ବାଚନର ଫଳାଫଳ ଏକଥା ସ୍ପଷ୍ଟ କରିଦେଇଛି ।




ଜାଭାର ବିଶ୍ୱବିଖ୍ୟାତ ବୌଦ୍ଧମନ୍ଦିର 'ବୋରୋବୁଦୁର'



ଗ୍ରାମ୍ୟଶିଳ୍ପୀଦ୍ୱାରା ଅଙ୍କିତ ଭାରତୀୟ ପ୍ରାଚୀନ ଚିତ୍ର



ମନ୍ଦର-ଅଭମୂଖେ ଅର୍ଘ୍ୟ ସହ ଗ୍ରାମ୍ୟ ଯୁବତୀ



ଶିକାରୀ ନୃତ୍ୟଭଙ୍ଗୀରେ କଳାଶିଳ୍ପୀ



ନୃତ୍ୟଭଙ୍ଗୀରେ ପକ୍ଷୀବିଶେଷ



ବାଲିର ଏକ ପରିବାରରେ ପୂଜାକର୍ମରତ ଗ୍ରାମ୍ୟ ପୁରୋହିତ

ଲୋକକଥାର ଏକ ନୃତ୍ୟରୂପ



ସମବେତ-ନୃତ୍ୟରେ ଛାତ୍ରୀବୃନ୍ଦ



ଏକ ପ୍ରାଚୀନ ମନ୍ଦିରର ପ୍ରବେଶ ଦ୍ୱାର




ଦୁର୍ଗମ ପୁଞ୍ଚକ ଗିରିପଥ


Digitized by srujan ka@gmail.com

ଏଇଭଳି ପରିପ୍ରେକ୍ଷୀରେ ଆଜି ନ୍ୟାସନାଲିଷ୍ଟ୍ ସରକାର ସବୁ ପ୍ରଗତିଶୀଳ କର୍ମଯୋଜନାକୁ ସମର୍ଥନ କରି ସମସ୍ତ ପ୍ରଗତିଶୀଳ ଦଳ ହାତ ମିଳାଉଥିବାବେଳେ ଏବଂ ଦେଶରେ ଏକ ସ୍ଥାୟୀ ଓ ଦୃଢ଼ ସରକାର ପ୍ରତିଷ୍ଠିତ ହେବାକୁ ଯାଉଥିବାବେଳେ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କର ଐକ୍ୟବଦ୍ଧ ପ୍ରଚେଷ୍ଟାରେ ଯେ ଏପରି ବିଭ୍ରାଟମାନ ଘଟିବା ସ୍ୱାଭାବିକ, ଏକଥା ସହଜରେ ହୃଦ୍‌ବୋଧ । ଆଜି ଏହାହିଁ ଇଣ୍ଡୋନେଶିୟାରେ ଘଟିଛି ।

ଦ୍ୱିତୀୟ ମହାଯୁଦ୍ଧରେ ଫ୍ୟାସିଜିମ୍‌ର ପରାଜୟ ହେଲା । ଜାପାନ ତଥାପି ତା ନିଜ ଘୋଷଣାର ଅବମାନନା କରି ସଙ୍ଗେ ସଙ୍ଗେ ଇଣ୍ଡୋନେଶିଆ ଛାଡ଼ି ଗଲା ନାହିଁ । ଇଣ୍ଡୋନେଶୀୟମାନେ ଜାପାନୀ ସେନାପତିମାନଙ୍କୁ ବିତାଡ଼ିତ କରି ନିଜ ହାତକୁ ଶାସନ-ଡୋର ନେଇସାରିବାପରେ ମଧ୍ୟ ହଲାଣ୍ଡ ସରକାର କିପରି ପୁଣି ଥରେ ଇଣ୍ଡୋନେଶିଆ ହସ୍ତଗତ କରିବାକୁ ପ୍ରଚେଷ୍ଟାର ତ୍ରୁଟି କରି ନ ଥିଲା, ସେକଥା ଅନେକଙ୍କର ମନେ ଥିବ । ମନେ ହୁଏ, ଆଜି ବି ଇଣ୍ଡୋନେଶିଆଉପରୁ ସାମ୍ରାଜ୍ୟବାଦୀମାନଙ୍କର ଲୋଲୁପ ଦୃଷ୍ଟି ଅପସରି ଯାଇ ନାହିଁ । ପ୍ରଥମ ପରିଚ୍ଛେଦରେ 'ଦାରୁଲ୍ ଇସ୍‌ଲାମ୍'ର ପରିଚୟ ଦେଇଛୁ । ସେଦିନର ସେହି ଭୟାବହ ରଜନୀପରେ ବିଶିଷ୍ଟ ସମ୍ବାଦପତ୍ରମାନଙ୍କରେ ଯେଉଁସବୁ ଖବର ପ୍ରକାଶ ପାଇଲା, ସେଥିରୁ ଜାଣିଲି, ଏଇ ସଶସ୍ତ୍ର ବାହିନୀପଛରେ କୌଣସି ବୈଦେଶିକ ଶକ୍ତିର ସଗୁପ୍ତ ସାହାଯ୍ୟ ଓ ପୃଷ୍ଠପୋଷକତା ରହିଛି ।

ଇଣ୍ଡୋନେଶୀୟ ରାଜନୀତିର ଆଉ ଏକ ବିଶେଷତ୍ୱ ସେଠାକାର ସୈନ୍ୟବାହିନୀ । ସୈନ୍ୟବାହିନୀଭିତରେ ବିଭିନ୍ନ ରାଜନୈତିକ ଦଳର ଅନୁରକ୍ତ ପ୍ରଚୁର ରହିଛନ୍ତି । ସେମାନଙ୍କର

ପ୍ରତିପତ୍ତି ଉପରେ ଶାସନଗତ କ୍ଷମତାରେ ଥିବା ବ୍ୟକ୍ତିମାନଙ୍କର ନିଷ୍ପତ୍ତି ବହୁ ପରିମାଣରେ ନିର୍ଭର କରେ ।

କିନ୍ତୁ ଏସମସ୍ତ ସତ୍ତ୍ୱେ ସେଠାରେ ଯେଉଁ ଇପ୍ସିତ ଐକ୍ୟର ସୂଚନା ମୁଁ ଦେଖି ଆସିଛି, ଯାହାର ପ୍ରମାଣ ଆଜି ପ୍ରଗତିଶୀଳ ବିଭିନ୍ନ ରାଜନୈତିକ ଦଳର ଘୋଷଣାଭିତରେ ସୁପରିସ୍ଫୁଟ, ତାହାର ଯେ ନିଶ୍ଚିତ ଜୟ ହେବ, ଏଥିରେ ସନ୍ଦେହ ନାହିଁ । ଔପନିବେଶିକ ଶୋଷଣର ଶେଷ ଚିହ୍ନକୁ ଲିଭାଇଦେବାପାଇଁ, ଦେଶକୁ ଶିଳ୍ପସମୃଦ୍ଧ କରିବାପାଇଁ, ଭୂସ୍ୱାର୍ଥ ସକାଶେ ଆଜି ସର୍ବନିମ୍ନ କାର୍ଯ୍ୟକ୍ରମଉପରେ ଭିନ୍ନ ଭିନ୍ନ ମତବାଦର ନେତୃବର୍ଗଙ୍କୁ କ୍ରମଶଃ ପରସ୍ପରପ୍ରତି ଶ୍ରଦ୍ଧାଶୀଳ ହେବାର ଲକ୍ଷଣ ଦେଖାଯାଉଛି ।

ପୃଥିବୀର ଅନ୍ୟତମ ବୃହତ୍ ସାଧାରଣତନ୍ତ୍ର ଏଇ ଦେଶର ପ୍ରାକୃତିକ ଅବସ୍ଥିତି କଥା ଭୁଲିଗଲେ ଚଳିବ ନାହିଁ । ତିନି ହଜାର ଦ୍ୱୀପ; ତାଭିତରେ ଯୋଗାଯୋଗର ଅସୁବିଧା ଏବେ ବି ଦୁର୍ବିସହ । ପ୍ରାକୃତିକ ଦୁର୍ଯୋଗରେ ଯୋଗାଯୋଗର ଗୋଟିଏ ଗୋଟିଏ ଗତାନୁଗତିକ ପଥ ମଧ୍ୟ ଥରେ ଥରେ ବଦଳିଯାଏ । ଏଭଳି ଏକ ଦେଶକୁ ଗୋଟିଏ ଏକକ ରାଷ୍ଟ୍ର (Unitary State) ହିସାବରେ ରଖିବା କେତେ କଷ୍ଟସାଧ୍ୟ, ସେକଥା ଅନୁମାନ କରିବା ସହଜ । ଭାଷା ଓ ପରମ୍ପରାଗତ ଅନ୍ୟାନ୍ୟ ତାରତମ୍ୟ ବି ରହିଛି । ଡଚ୍ ସରକାର ଚାହିଁଥିଲେ, ଏହିସବୁ ଦ୍ୱୀପପୁଞ୍ଜକୁ ଏକ ଲଘୁ ସମ୍ବିଧାନଗତ ବନ୍ଧନରେ ଯୋଡ଼ିଦେଇ ଶାସନଗତଭାବରେ ଦୁର୍ବଳ କରିଦେବାପାଇଁ । ଏହାଫଳରେ ସାମ୍ରାଜ୍ୟବାଦୀମାନଙ୍କର ବିଶେଷ ସୁବିଧା ହୋଇଥାନ୍ତା, ସନ୍ଦେହ ନାହିଁ । ସୁକର୍ଣ୍ଣ ମଧ୍ୟ ଏକଦା ଘଟଣାଚକ୍ରରେ ପଡ଼ି ଏଭଳି ପ୍ରସ୍ତାବରେ ରାଜି ହୋଇଯାଇଥିଲେ । ଅବଶ୍ୟ ପରବର୍ତ୍ତୀ ସମୟରେ ଇଣ୍ଡୋନେଶିଆକୁ ଏକ କେନ୍ଦ୍ରୀୟ

ଶକ୍ତିଶାଳୀ ସରକାର-ଅଧୀନରେ ଗୋଟିଏ ରାଷ୍ଟ୍ର ହିସାବରେ ରଖିବାର ଗୁରୁତ୍ୱ ଅନୁଭୂତ ହେଲା ଏବଂ ତଦନୁସାରେ ଆଜି ତାହା ଏକ କେନ୍ଦ୍ରଶାସିତ ରାଷ୍ଟ୍ର ।

ଆଜି ସୁମାତ୍ରାରେ ଯେଉଁଭଳି ବିଭ୍ରାଟମାନ ଘଟିଛି, ତାହାର ଦୁଇପ୍ରକାର ରୂପ ଅଛି । ରାଜନୈତିକଭାବରେ ଜାଭାହିଁ ଇଣ୍ଡୋନେଶିଆର ସର୍ବାଧିକ ସଚେତନ ଭୂଖଣ୍ଡ । ଏଠାରେ ସବୁଠୁଁ ବଡ଼ ସ୍ୱାଧୀନତା-ସଂଗ୍ରାମ ହୋଇଛି ଏବଂ ରାଜନୀତି ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ସମସ୍ତ ଘଟଣା ଏହି ଦ୍ୱୀପରେହିଁ ଘଟିଛି । ଡଚ୍‌କାଳୀନ ରାଜଧାନୀ ଜୋଗ୍‌ଜାକର୍ତ୍ତା ଏହି ଦ୍ୱୀପରେ ଅବସ୍ଥିତ । ବର୍ତ୍ତମାନ ରାଜଧାନୀ ଜାକର୍ତ୍ତା ମଧ୍ୟ ଏହି ଦ୍ୱୀପରେ । ଅନ୍ୟ ଦିଗରେ ସୁମାତ୍ରାର ଅଧିବାସୀମାନେ ମଧ୍ୟ ସ୍ୱାଧୀନତା ଆନ୍ଦୋଳନରେ ଖୁବ୍ ଗୌରବଜନକ ଅଂଶ ଗ୍ରହଣ କରିଥିଲେ । ରାଜନୈତିକ ଗୁରୁତ୍ୱ ଦିଗରୁ ଜାଭା ସହ ସମାନ ନ ହେଲେ ମଧ୍ୟ ପ୍ରାକୃତିକ ସମ୍ପଦରେ ଏ ଦ୍ୱୀପକୁ ଇଣ୍ଡୋନେଶିଆର ଜୀବନକେନ୍ଦ୍ର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସୁମାତ୍ରାର ସାମ୍ପ୍ରତିକ ବିଦ୍ରୋହପଛରେ ଅଧିକ ସ୍ୱାୟତ୍ତଶାସନ ପାଇବାର ଆଗ୍ରହ ଅଛି । କିନ୍ତୁ ତାହାଠୁଁ ବେଶୀ ଅଛି ପ୍ରତିକ୍ରିୟାଶୀଳମାନଙ୍କର ଚକ୍ରାନ୍ତ, ଯାହାକି ଇଣ୍ଡୋନେଶିଆର ଏକତାକୁ ବିଭ୍ରାନ୍ତ କରିଦେବାକୁ ଚାହେଁ । ସ୍ୱାଧୀନତାଯୁଦ୍ଧସମୟରେ ଏପରି ବହୁ ଅବାଞ୍ଛିତ ବ୍ୟକ୍ତିଙ୍କ ହାତରେ ଅସ୍ତ୍ରଶସ୍ତ୍ର ଦେବାକୁ ପଡ଼ିଥିଲା, ଯେଉଁମାନେ ସେସବୁ ସଞ୍ଚୟ କରି ଆଜି ଚକ୍ରାନ୍ତର ଶିକାର ହୋଇ ମାତୃଭୂମିବିରୁଦ୍ଧରେ ସେସବୁ ପ୍ରୟୋଗ କରୁଛନ୍ତି । ତାଛଡ଼ା ପରାଭୂତ ଜାପାନୀ ବାହିନୀ ମଧ୍ୟ ପ୍ରଚୁର କମାଣ ବନ୍ଧୁକଠୁଁ ଆରମ୍ଭ କରି ବିଭିନ୍ନ ପ୍ରକାରର ଅସ୍ତ୍ରଶସ୍ତ୍ର ସ୍ଥାନ ଅସ୍ଥାନରେ ଛାଡ଼ି ଯାଇଥିଲେ ।

ଏସବୁ ସାମୟିକ ବିଭ୍ରାଟ ସତ୍ତ୍ୱେ ଆଜ ଯେ ବନ୍ଧନମୁକ୍ତ ଏସିଆର ଏକ ନୂତନ ମହାଜାତିର ସବଳ ଅଭ୍ୟୁତ୍ଥାନ ହୋଇଛି, ଏଥିରେ ସନ୍ଦେହର ଅବକାଶ ନାହିଁ । ଯାହା କିଛି ବିଭ୍ରାଟ, ସେସବୁ ଦେଶର ଦୁର୍ବଳତାପ୍ରସୂତ ନୁହେଁ; ପ୍ରଗତିପଥରେ ଶକ୍ତ ପଦକ୍ଷେପ-ଜନିତ ପ୍ରତିକ୍ରିୟାର ଶେଷ ସ୍ଫୁଲିଙ୍ଗ ।

## ବଗ୍ୱର-ସମାଗ୍ୱର

ଉର୍ଦ୍ଦ୍ ସାହିତ୍ୟକ ସଜ୍ଜଦ୍ ଜାହିର୍‌ଙ୍କ ଏକ ରସ-ରଚନାର ଅନୁବାଦ କେଉଁଠି ପଢ଼ିଥିଲି······ଥରେ ଗୋଟିଏ ଟ୍ରେନ୍‌କାମରାରେ ଦୁଇଜଣ ଯାତ୍ରୀ ବସି ଯାଉଥିଲେ, ଜଣେ ଅତି ଗମ୍ଭୀର, ଉତ୍ତମ ବେଶଭୂଷାଧାରୀ ଏବଂ ଖଣ୍ଡିଏ ମୋଟା ବହିଭିତରେ ଚିନ୍ତାମଗ୍ନ। ଅନ୍ୟ ଜଣକ ଅତି ସାଧାରଣ ଲୋକ, ଦେଖିଲେ ମନେ ହେବ ହୁଏତ ବିଲକୁଲ ବିନା ଟିକେଟର ଯାତ୍ରୀ । କାମରାଟିଭିତରେ ଆଉ କେହି ନ ଥିଲେ ଏଇ ଦୁଇ ଜଣଙ୍କୁ ଛାଡ଼ି, ଏବଂ ଏ ଦୁଇ ଜଣ ବହୁ ସମୟ ଧରି ସହଯାତ୍ରୀ ହୋଇଥିଲେ ବି ପରସ୍ପର କଥାଭାଷା ହେଉ ନ ଥିଲେ ।

ଶେଷକୁ ନୀରବତା ଭଙ୍ଗ କରି ଦ୍ୱିତୀୟ ବ୍ୟକ୍ତି ଜଣକ କହିଲେ, "ଆଜ୍ଞା, ଯଦି କିଛି ମନେ ନ କରନ୍ତି ଏଭଳି ନୀରବ ଗମନ ମୋ ପକ୍ଷରେ ,ବଡ଼ ଅସହ୍ୟ ଲାଗୁଛି । ଆସନ୍ତୁ, କିଛିଟା ଗଳ୍ପସଳ୍ପ କରାଯାଉ ।"

ପ୍ରଥମ ବ୍ୟକ୍ତି ବହିରୁ ମୁହଁ ଫେରାଇ ସହାସ୍ୟ ବଦନରେ କହିଲେ, "ନିଶ୍ଚୟ, ନିଶ୍ଚୟ ।"

ଦ୍ୱିତୀୟ ବ୍ୟକ୍ତି—"କିନ୍ତୁ ମୁଁ ଆଜ୍ଞା, ଜଣେ ସାଧାରଣ ଅପାଠୁଆ ଲୋକ, କେବଳ କାଳ ଧରିବା ଛଡ଼ା ମୋତେଇ ଆଉ କିଛି ହୁଏ ନାହିଁ ।"

ପ୍ରଥମ—"ଠିକ୍ ଅଛି । ଆପଣଙ୍କର ଯାହା ଇଚ୍ଛା ।"

ଦ୍ୱିତୀୟ—"ଦେଖନ୍ତୁ, ମୁଁ ପ୍ରଶ୍ନ ପଚାରୁଛି । ଆପଣ ଉତ୍ତର ଦେବେ । ଉତ୍ତର ଦେଇ ନ ପାରିଲେ କିଛି ଖେସାରତ ଦେବେ । ଆପଣଙ୍କ ପ୍ରଶ୍ନର ଉତ୍ତର ମୁଁ ଦେଇ ନ ପାରିଲେ ମୁଁ ବି ଖେସାରତ ଦେବି ।"

ଦ୍ୱିତୀୟ—"ଏ ତ ଯୁକ୍ତିଯୁକ୍ତ କଥା ।"

ପ୍ରଥମ—"ମୁଁ ଆଜ୍ଞା, ଗରିବ ଲୋକ । ସୁତରାଂ ମୋର ବିନୀତ ପ୍ରସ୍ତାବ, ମୁଁ ପରାସ୍ତ ହେଲେ ପାଞ୍ଚ ଟଙ୍କା ଦେବି ଏବଂ ଆପଣ ପରାସ୍ତ ହେଲେ ଦଶ ଟଙ୍କା ଦେବେ ।"

ଦ୍ୱିତୀୟ—"ତଥାସ୍ତୁ ।"

ପ୍ରଥମ—"ଆପଣ ହେଲେ ବିଦ୍ୱାନ୍ ବ୍ୟକ୍ତି । ମୁଁ ସେହିପରି କିଛି ନୁହେଁ । ସୁତରାଂ ପ୍ରଶ୍ନ ପଚାରିବାର ଅଧିକାର ପ୍ରଥମେ ମୁଁ ପାଇବା ଉଚିତ ।"

ଦ୍ୱିତୀୟ—"ଭଲ କଥା, ଭଲ କଥା । ତୁମେହିଁ ପ୍ରଥମେ ପଚାର ।"

ଦ୍ୱିତୀୟ ବ୍ୟକ୍ତିଟି ସେତେବେଳେ ଅତି ଗୁରୁଗମ୍ଭୀର ସ୍ୱରରେ ପ୍ରଶ୍ନ କଲେ, "ଏପରି ଏକ ଜାନୁଆରର ନାମ କହନ୍ତୁ, ଯାହାର ଏକ ସହସ୍ର ମୁଣ୍ଡ ସ୍ୱର୍ଗକୁ ଲାଗିଛି ଓ ଦ୍ୱିସହସ୍ର ପାଦ ପୃଥିବୀରେ ରହିଛି ।"

ପ୍ରଥମ ଭଦ୍ରଲୋକଟି ନୀରବରେ ବହୁ ସମୟ ଚିନ୍ତା କଲେ । କ୍ରମଶଃ ତାଙ୍କ ମୁଖମଣ୍ଡଳ ଲାଲ ହୋଇଆସିଲା । ତତ୍ପରେ ଅଗତ୍ୟା ଦଶଟି ଟଙ୍କା ମନିବେଗରୁ ବାହାର କରି ପ୍ରଶ୍ନକର୍ତ୍ତାଙ୍କ ହାତରେ ଦେଇ କହିଲେ, "ମୁଁ ପରାସ୍ତ ହେଲି, ଟଙ୍କା ନିଅନ୍ତୁ, କିନ୍ତୁ ସେ ଅଦ୍ଭୁତ ଜନ୍ତୁଟି କଣ ?"

ଦ୍ୱିତୀୟ ବ୍ୟକ୍ତି ସଙ୍ଗେ ସଙ୍ଗେ ପାଞ୍ଚଟି ଟଙ୍କା ପକେଟରୁ ବାହାର କରି ପ୍ରଥମ ବ୍ୟକ୍ତିଙ୍କ ଆଗରେ ରଖିଦେଇ କହିଲେ, "ଆଜ୍ଞା, ମୁଁ କଣ ସେ ଜନ୍ତୁଟିକୁ ଜାଣିଛି ?"

ବାନ୍ଦ୍ରାର ସହରତଳି ଅଞ୍ଚଳରେ ଜଣେ ଓକିଲଙ୍କ ଘରେ ବସିଥିବାବେଳେ ମୋର ଏ ଗଳ୍ପ ମନେ ପଡ଼ୁଥିଲା । ଓକିଲଙ୍କ ବାପା ଜଣେ ଫଳବ୍ୟବସାୟୀ ଥିଲେ । ତାଙ୍କର ଥିଲା ମନୋରମ ଫଳ ପୁଷ୍ପର ଗୋଟିଏ ଉଦ୍ୟାନ । କୌଣସି ଏକ କାରଣରୁ ଜଣେ ପ୍ରତିବେଶୀଙ୍କ ସହ ସେ ଗୋଟିଏ ବାଜି ରଖିଲେ । ବାଜିରେ ପରାସ୍ତ ହେଲେ ସେ ଉକ୍ତ ଉଦ୍ୟାନଟି ହସ୍ତାନ୍ତରିତ କରିଦେବାର ଚୁକ୍ତି ଥିଲା ଏବଂ ପ୍ରତିପକ୍ଷ ପରାସ୍ତ ହେଲେ କିଛି ଅର୍ଥ ଦେବାର ଚୁକ୍ତି ଥିଲା । ବାଜିରେ ଓକିଲଙ୍କ ବାପା ପରାସ୍ତ ହେଲେ ଏବଂ ଉଦ୍ୟାନଟି ଦେଇଦେଲେ । ଠିକ୍ ପରେ ପରେ ପ୍ରତିପକ୍ଷ ମଧ୍ୟ ପରାସ୍ତ ହେଲେ । ସେତେବେଳେ ଦେଶରେ ମୁଦ୍ରାସ୍ଫୀତି ଘଟିଥାଏ । ଯେଉଁ ପରିମାଣ ଅର୍ଥ ପ୍ରତିପକ୍ଷ ଦେବାର କଥା, ସେହି ପରିମାଣ ଅର୍ଥର ପ୍ରକୃତ ବଜାରମୂଲ୍ୟ ମୂଳ୍ୟ ତାର ଏକଚତୁର୍ଥାଂଶକୁ ଖସିଆସିଥାଏ । ସେ ଆଉ ଅର୍ଥ ନ ଦେଇ ହାସଲ କରିଥିବା ଉଦ୍ୟାନଟିର ଗୋଟିଏ ଅଂଶ ଓକିଲଙ୍କ ବାପାଙ୍କୁ ଦେଇଦେଲେ । ତାହାର ଗୋଟିଏ ଅଂଶ ନେଇ ବର୍ତ୍ତମାନ ଓକିଲ ଘର କରି ଆଇନ ବ୍ୟବସାୟ କରୁଛନ୍ତି ।

ମୁଁ ଭାବୁଥିଲି, ଭାରତୀୟ ଚୁକ୍ତି-ଆଇନ (Contract Act) ଅନୁସାରେ ଏପରି ଚୁକ୍ତିସବୁ କାର୍ଯ୍ୟକାରୀ ହେବା ସମ୍ଭବ ନୁହେଁ । ମୋ କଥା ଓକିଲ ମହାଶୟ ଶୁଣି କହିଲେ, "ଏଠାକାର ଆଇନ ଅନୁସାରେ ଏକଥା ସମ୍ଭବ କି ନୁହେଁ, ତାହା ଭିନ୍ନ ବ୍ୟାପାର । କିନ୍ତୁ ଆଇନର ଭାଷାପର୍ଯ୍ୟନ୍ତ ଯାଉଛି କିଏ ? ଏ ଏକ ମାନସିକଗତ ପ୍ରଶ୍ନ । ଇଣ୍ଡୋନେଶିଆର ଜନସାଧାରଣ ଜବାବଟାକୁ ବଡ଼ କରି ଦେଖନ୍ତି । ଆପଣ ଶୁଣିଲେ ବିସ୍ମିତ ହେବେ, ଏଠାରେ ବଡ଼ ଆଶ୍ଚର୍ଯ୍ୟ ପ୍ରକାର ଚୋରି ହୁଏ । ଆପଣ ହୁଏତ ହଜାରେ ଟଙ୍କାର ନୋଟ ପକେଟରେ ରଖିଛନ୍ତି, ପର ଦିନ ଦେଖିବେ, ସେଥିରୁ

ଶହେଟି ଟଙ୍କା ଛାଡ଼ ବାକିତକ ଅର୍ଥ ଯଥାପୂର୍ବ ମହଜୁଦ ଅଛି । ସ୍ତ୍ରୀର ଧରା ପଡ଼ିଲେ ସ୍ୱୀକାର କରିଦିବ, ତାର ଅମୁକ କାରଣପାଇଁ ଶହେ ଟଙ୍କା ଦରକାର ଥିଲା, ବେଶୀ ସିଏ କାହିଁକି ନେବ ? ଆଜି ଦରକାର ଯେତେବେଳେ ପଡ଼ୁଛି, ନ ନେବ ବା କାହିଁକି ? ଏଭଳି ଜବାନବନ୍ଦୀ ଏଠାର କୋର୍ଟ କଚେରୀରେ ଅପର୍ଯ୍ୟାପ୍ତ ।"

ହେ ଇଣ୍ଡୋନେଶିଆ, ତୁମକୁ ଜୁହାର ! ଏଠାରେ ସବୁ କଥା ବଡ଼ ବିଚିତ୍ର—ଚୋରି ପର୍ଯ୍ୟନ୍ତ !!

ୱେକିଲାତି ଓ ଡାକ୍ତରି, ଏ ଦୁଇ ବ୍ୟବସାୟ ବର୍ତ୍ତମାନ ଇଣ୍ଡୋନେଶିଆରେ ଖୁବ୍ ଲାଭଜନକ । ବିଦେଶୀ ଶାସକମାନେ ସ୍ୱାସ୍ଥ୍ୟ ଦିଗରେ ସମ୍ପୂର୍ଣ୍ଣ ଅବହେଳାସୂଚକ ମନୋଭାବ ଗ୍ରହଣ କରିଥିଲେ । ଜାପାନୀ ଅଧିକାରବେଳେ ସ୍ୱାସ୍ଥ୍ୟ ବ୍ୟବସ୍ଥା ଆହୁରି ବିପର୍ଯ୍ୟୟର ସମ୍ମୁଖୀନ ହେଲା, ଯେତେବେଳେ ଫ୍ୟାସିଷ୍ଟ ବାହିନୀ ଜାକର୍ତ୍ତାର ବୃହତ୍ତମ ହସ୍‌ପିଟାଲ ଅବରୋଧ କରି ରଖିଲେ । ହସ୍‌ପିଟାଲ, ଆମ୍ବୁଲାନ୍‌ସ, ଡାକ୍ତରୀ ବାହିନୀ, ଏସବୁଉପରେ ଆକ୍ରମଣ କରିବା ବହୁ କାଳରୁ ଯୁଦ୍ଧନୀତିର ବିରୋଧୀ । ଆନ୍ତର୍ଜାତିକ କ୍ଷେତ୍ରରେ ଏହାର ଯୌକ୍ତିକତା ନୈତିକ ଦୃଷ୍ଟିରୁ ସ୍ୱୀକୃତି ପାଇଥିଲେ ମଧ୍ୟ ଦ୍ୱିତୀୟ ମହାଯୁଦ୍ଧସମୟରେ ଏସବୁ ପରମ୍ପରାକୁ କେତେଦୂର ବିସର୍ଜନ ଦିଆଯାଇଥିଲା, ଜାକର୍ତ୍ତା ହସ୍‌ପିଟାଲ ଅବରୋଧ ତାର ପ୍ରମାଣ । ଏହାର ତୀବ୍ର ପ୍ରତିବାଦ କରି ସେତେବେଳେ ବିଶ୍ୱବିଦ୍ୟାଳୟର ଛାତ୍ରମାନେ ଏକ ଜୋରଦାର ଆନ୍ଦୋଳନ କରିଥିଲେ । * ପରବର୍ତ୍ତୀରେ ଇଣ୍ଡୋନେଶିଆର ଜାତୀୟ

* Report of the International Student Congress—1950.

ମୁକ୍ତିବାହିନୀ ଜାପାନୀମାନଙ୍କ ହାତରୁ ହସ୍ପିଟାଲକୁ ଛଡ଼ାଇ ଆଣିଥିଲା । କିନ୍ତୁ ଏହି ଗଣ୍ଡଗୋଳଭିତରେ ହସ୍ପିଟାଲର ବହୁ ଆସବାବପତ୍ର ଏବଂ ଚିକିତ୍ସାର ବୈଜ୍ଞାନିକ ଦାମୀ ଯନ୍ତ୍ରପାତି ନଷ୍ଟ ହେବା ସଙ୍ଗେ ସଙ୍ଗେ ରୋଗୀମାନଙ୍କର ପ୍ରଭୂତ କ୍ଷତି ହୋଇଥିଲା ।

ବର୍ତ୍ତମାନ ପ୍ରତ୍ୟେକ ସହରରେ ବଡ଼ ବଡ଼ ହସ୍ପିଟାଲ୍‌ମାନ ସ୍ଥାପନ କରାଯାଇଛି । ବିଶ୍ୱବିଦ୍ୟାଳୟମାନଙ୍କର ମେଡ଼ିକାଲ ଫେକାଲ୍‌ଟିଉପରେ ଯଥେଷ୍ଟ ଜୋର୍ ଦିଆଯାଉଛି ଏବଂ ବହୁ-ସଂଖ୍ୟକ ଛାତ୍ର ଯେପରି ଉପଯୁକ୍ତ ଡାକ୍ତରୀ ଶିକ୍ଷା ପାଇ ଉତ୍ତୀର୍ଣ୍ଣ ହୋଇ ପାରିବେ, ସେଥିପରେ ଶିକ୍ଷା ଓ ସ୍ୱାସ୍ଥ୍ୟ ବିଭାଗ ଖୁବ୍ ତତ୍ପର ଅଛନ୍ତି । ତଥାପି ବିରାଟ ଜନସଂଖ୍ୟା ତୁଳନାରେ ଡାକ୍ତରଙ୍କ ସଂଖ୍ୟା ଯଥେଷ୍ଟ ନୁହେଁ ବୋଲି ବିଦେଶୀ ଡାକ୍ତରମାନଙ୍କୁ ସର୍ବଦା ସ୍ୱାଗତ କରାଯାଉଛି ।

ପୂର୍ବକାଳରେ ଥିବାବେଳେ ଦିନେ ଜଣେ ଭାରତୀୟ ଚିକିତ୍ସକ ଡକ୍ଟର ତ୍ୟାଗୀ ବୁଲି ଆସିଥିଲେ । ସେ କହୁଥିଲେ,ଅଳ୍ପ ଦିନ ତଳ-ପର୍ଯ୍ୟନ୍ତ ଇଣ୍ଡୋନେସିଆର ପଲ୍ଲୀରେ ଗୁଣିଆ ଓ ମନ୍ତ୍ରବୈଦ୍ୟଙ୍କ ଭଳି ହାତୁଡ଼ିଆମାନଙ୍କର ଉପଦ୍ରବ କିଛି କମ୍ ନ ଥିଲା । ଅଶିକ୍ଷିତ ଜନସାଧାରଣଙ୍କ ଭିତରେ ତ ସେମାନଙ୍କପ୍ରତି ସୀମାତୀତ ବିଶ୍ୱାସ ଥିଲା, ତାଛଡ଼ା ତଥାକଥିତ ଶିକ୍ଷିତ ବିଦେଶୀମାନେ ଏହିସବୁ ଅନ୍ଧବିଶ୍ୱାସଉପରେ ଆଧ୍ୟାତ୍ମିକ ରହସ୍ୟ ଆରୋପଣ କରି ଯେଉଁଭଳି ନିବନ୍ଧସବୁ ପତ୍ରପତ୍ରିକାମାନଙ୍କରେ ପ୍ରକାଶ କରୁଥିଲେ, ସେଥିରେ ଶିକ୍ଷିତ ପାଠକମାନେ ବି ଅଭିଭୂତ ହୋଇପଡ଼ୁଥିଲେ ।

ଇଣ୍ଡୋନେସିଆରେ ଡାକ୍ତରମାନଙ୍କର ସୌଭାଗ୍ୟ କଥା ଶୁଣି ଶୁଣି ମୋ ସହିତ ଥିବା ବଙ୍ଗଳାର ପ୍ରତିନିଧି, ଯେ କି ଜଣେ ମେଡ଼ିକାଲ ଛାତ୍ର, ବୃଢ଼ନିଶ୍ଚିତ ହୋଇଯାଇଥିଲେ ଯେ, ଡିଗ୍ରି

ହାସଲ ପରେ ଏହି ଦେଶକୁ ଆସିନ୍ତି ସେ ତାଙ୍କର ବ୍ୟବସାୟ ଆରମ୍ଭ କରିବେ ।

ଉଲ୍ଲିଖିତ ବୈଠକରେ ଜଣେ ମୋତେ ଏବଂ ମୋ ସହିତ ଗାଇଡ୍ ହୋଇ ଯାଇଥିବା ଶ୍ରୀଯୁକ୍ତ ଜାଭିଦମାଙ୍କୁ ବିଦାୟ ଦେବାପାଇଁ ଆସି ଆସି କହିଲେ, ପୂର୍ବେ ବିଦେଶୀ ଶାସନସମୟରେ ଆମ ଦେଶରେ ଅବଶ୍ୟ ବିଚାର ପ୍ରଣାଳୀ ବି ତାଜ୍ୱ ଧରଣର ଥିଲା । ଏବେ ଆମେ ଆଇନ୍ ନେଇ କାରବାର କରୁଥିବା ବ୍ୟକ୍ତିମାନେ ଖୁବ୍ ହୁସିଆର ଅଛୁ, ଯେପରି ଆମ ଦେଶରେ ଏକ ସୁସ୍ଥ, ସଙ୍ଗତିପୂର୍ଣ୍ଣ ବିଚାର ବିଭାଗ ମୁଣ୍ଡ ଟେକି ଉଠିବ । ସେଥିପାଇଁ ଆମେ ବାରମ୍ବାର ଆଇନବିତ୍‌ମାନଙ୍କର ବୈଠକ, ସମ୍ମିଳନୀ ଇତ୍ୟାଦି ଡାକି ବିସ୍ତୃତ ଆଲୋଚନା କରିବାର ଚେଷ୍ଟା କରୁଛୁ । ଆଭ୍ୟନ୍ତରୀଣ ସାର୍ବଭୌମତ୍ୱ (Internal Sovereignty)ର ଏକ ବଡ଼ ଶକ୍ତି ହେଉଛି ବିଚାର ବିଭାଗ ।”

ଜାଭିଦମା କହିଲେ, “ପୃଥିବୀର ଇତିହାସରେ ଯେଉଁ ସମୟକୁ ମଧ୍ୟଯୁଗ ବୋଲି କୁହାଯାଏ, ସେତେବେଳେ ଇଣ୍ଡୋ-ନେଶିଆରେ ସୁଲତାନ, ସାମନ୍ତବାଦୀ ଶାସକମାନଙ୍କର ଅଖଣ୍ଡ ଆଧିପତ୍ୟ । ଆମ ଦେଶର ଇତିହାସ-ବିଶେଷଜ୍ଞମାନେ କହନ୍ତି, ବିଚାର ବିଭାଗକୁ ସ୍ୱତନ୍ତ୍ର କରି ରଖିବାପାଇଁ ଏବଂ ଶାସକର ବ୍ୟକ୍ତିଗତ ପ୍ରଭାବରୁ ତାହାକୁ ମୁକ୍ତ କରିବା ପାଇଁ ତତ୍କାଳୀନ ରଜାମାନେ ଉଦ୍ୟମ କରିଥିଲେ । ଗୋଟିଏ ଜାତିର ମହତ୍ତ୍ୱ ବିଷୟରେ କଥାବାର୍ତ୍ତା କରିବାକୁ ଓ ଗର୍ବିତ ବୋଧ କରିବାକୁ ବେଶ୍ ଆରାମ ଲାଗେ । ମୋର କିନ୍ତୁ ମନେ ହୁଏ, ପୃଥିବୀରେ ପ୍ରତ୍ୟେକ ଜାତିର ଇମିତି ବହୁ ପରମ୍ପରା ରହିଛି । ବିଚାର ବିଭାଗକୁ ଯେତେ ନିରପେକ୍ଷ କରାଯାଉ, ଯେତେ ସୁଶୃଙ୍ଖଳ ଏବଂ ଶାସକସମ୍ପ୍ରଦାୟର


Digitized by srujan ka@gmail.com

ପ୍ରଭାବରୁ ମୁକ୍ତ ରଖାଯାଉନା କାହିଁକି, ଦେଶର ସାଧାରଣ ଲୋକେ ବେଶୀ ଶିକ୍ଷିତ ଏବଂ ସମାଜ ସଚେତନ ନ ହେଲେ ଆଇନ ସେମାନଙ୍କ ସପକ୍ଷରେ ଯେଉଁଠି ନ୍ୟାୟସଙ୍ଗତଭାବରେ ଯିବାର କଥା, ସେଠି ବି ଯାଇପାରିବ ନାହିଁ ।”

ଓକଲ ବିଦାୟ ନେଲେ । ଜାଣ୍ଡାଦମା ଗୋଟିଏ 'ପେଗ୍' ଡାକଲେ । ଆମେ ତହିଁରେ ବସିବାପରେ ସେ କହିଲେ,“ବୁଝିଲେ ! ଆନ୍ତର୍ଜାତିକ କ୍ଷେତ୍ରରେ ଲମ୍ବାଚଉଡ଼ା କଥା କହିବାପାଇଁ ଚାରି ପ୍ରକାର ଲୋକଙ୍କର ଲାଇସେନ୍ସ ଅଛି । ସେମାନେ ହେଲେ ପ୍ରେମିକ-ପ୍ରେମିକା, ପ୍ରଚ୍ଛର ବିଭାଗର ଲୋକ, ମେଜସିଆନ ଓ ଓକିଲ ।”

## ଜୋଗ୍‌ଜାକର୍ତ୍ତା-ପଥେ

ପରିଶେଷରେ ବାନ୍ଦୁଂରୁ ବିଦାୟନେବା ସମୟ ଆସିପହଞ୍ଚିଲା । ଅବିସ୍ମରଣୀୟ ସେଇ ମୁହୂର୍ତ୍ତ । କେତୋଟି ଦିନର ରହଣୀଭିତରେ ଏଇ ସ୍ୱପ୍ନମୟ ପରିବେଶ ସହ କେତେ ନିବିଡ଼ ଆତ୍ମୀୟତାରେ ବାନ୍ଧି ହୋଇପଡ଼ିଥିଲି । ଇଏ ଏକ ସହର, ନିହାତ ପାନ୍ଥିକ ମଣିଷକୁ ବି ଭାବପ୍ରବଣ କରିଦେବାର ଶକ୍ତି ଯାହାର ଅଛି । ଦୂର ଦିଗ୍‌ବଳୟରେ ନୀଳ ନୀଳ ଶିଳା-ଶିଖର-ଗୁଳ୍ମର ବେଷ୍ଟନୀ, ସମୟ-ଅସମୟରେ ଚପଳ ମେଘର ଫାଜିଲାମି, ଉଦ୍ୟାନବହୁଳ ପଥ-ପ୍ରାନ୍ତର, ଫେସନବାଜ ଚାଲଚଳଣିସ୍ତ ଓ ଅନ୍ୟାନ୍ୟ ବିଷୁବବୃତ୍ତୀୟ ବୃକ୍ଷଲତା, ସର୍ବୋପରି ସ୍ଫୂର୍ତ୍ତିମୟ ମଣିଷ, ଏମାନଙ୍କର ସମାବେଶରେ ବାନ୍ଦୁଂ ମହାନଗରୀର ଅଛି ଏକ ସହଜାତ ଆଶ୍ଚର୍ଯ୍ୟ ଆକର୍ଷଣ ।

ସୁରବାୟା ଓ ମାଲଙ୍ଗ୍ ଇତ୍ୟାଦି ସହରରେ ଆମର ଅଭ୍ୟର୍ଥନା ସମିତିର ବନ୍ଧୁମାନେ ଅନେକ ସମୟରେ ଥଟ୍ଟା କରି ପଚାରୁଥାନ୍ତି, "How did you enjoy Bandung, that enchanting city of young beauties ?" ଇଣ୍ଡୋନେଶିଆର ସମସ୍ତ ସହରରେ ଝିଅପିଲାଙ୍କର ଯିମିତି ତ୍ୱରିତ ସାଧିତ ହୋଇଛି, ପ୍ରତିନିଧିମାନଙ୍କ ମୁହଁରୁହିଁ ଶୁଣିଛି, ଏସିଆ ଓ ଆଫ୍ରିକାର ଚୀନକୁ ଛାଡ଼ି ଅନ୍ୟାନ୍ୟ ଦେଶମାନଙ୍କରେ ତାହା ସମ୍ଭବପର ହୋଇ ନାହିଁ । ଆମ ପରିଚର୍ଯ୍ୟା ଦାୟିତ୍ୱରେ ଥାଆନ୍ତି ଅଧିକାଂଶ ଝିଅ । ସେମାନଙ୍କ ମୁହଁରେ ସର୍ବଦା ପ୍ରଫୁଲ୍ଲତାର ଚିହ୍ନ । ସହରରେ ସାଇକେଲ ଓ

ଆଧୁନିକତମ ମୋଟର ବାଇକ୍‌ର ପ୍ରଚଳନ ଖୁବ୍ ପ୍ରଚୁର । ସେ ସବୁରେ ଆରୋହୀଙ୍କ ଅପେକ୍ଷା ଆରୋହିଣୀଙ୍କ ସଂଖ୍ୟାହିଁ ଅଧିକ । ସବୁ ସହରଠୁଁ ନାଗ୍ରପ୍ରଗତିର ବୃହତ୍ତମ ସାଧନାଭୂଇଁ ହେଉଛି ବାନ୍ଦୁଂ ।

ଇଣ୍ଡୋନେଶିଆର ବିଭିନ୍ନ ସ୍ଥାନ ବୁଲି ଦେଖିବାପାଇଁ ପ୍ରାୟ ସମସ୍ତ ଦେଶର ପ୍ରତିନିଧି ଦଳ ସେଦିନ ବାନ୍ଦୁଂ ଛାଡ଼ୁଥାନ୍ତି । ହୋଟେଲ ଆଗରେ ସେ କି ଉଦ୍ଦାମ କାରୁଣ୍ୟ ! ବିଶେଷକରି ଛୋଟ ଛୋଟ ପିଲାପିଲିମାନେ, ଯେଉଁମାନେ ଏ କେତେ ଦିନ ଧରି ଗୁପ୍ତଭାବେ ଆମ୍ଭମାନଙ୍କ ସହ ସର୍ବଦା ରହୁଆସିଥାନ୍ତି, ସେମାନଙ୍କର ଆଖି ଅଶ୍ରୁ ଛଳଛଳ ।

ଭାରତୀୟ ପ୍ରତିନିଧି ଦଳର ଆଉ କେତେକ ସଭ୍ୟଙ୍କ ସହ ମୁଁ ଏବଂ ବର୍ମା ଓ ଇଜିପ୍ଟର ପ୍ରତିନିଧିମାନେ ଜୋଗ୍‌ଜାକର୍ତ୍ତା ଯିବାର କଥା । ଆମେ ଷ୍ଟେସନରେ ଆସି ପହଞ୍ଚିବାବେଳକୁ ମୋର ବନ୍ଧୁ ଜାୟଦମା, ଜଣେ ତରୁଣ ସାହିତ୍ୟିକ ଆଲି ନଃସୁଣାନ୍ତ, ବାର୍ତ୍ତା-ବାନ୍ଦୁଂ ପତ୍ରିକାର ସାହିତ୍ୟ-ସମ୍ପାଦକ, ମୋଠୁଁ କବିତା ଲେଖାଇ ନେଇଥିବା ଛୋଟ ଝିଅଟିଏ ଏବଂ ଆଉ କେତେକ ସାମ୍ବାଦିକ ମୋ ସହ ଶେଷସାକ୍ଷାତ୍‌ପାଇଁ ଆସିଥାନ୍ତି । ତାଛଡ଼ା ସମସ୍ତ ପ୍ରତିନିଧିଙ୍କୁ ବିଦାୟ ଦେବାଲାଗି ଆଉ କେତେ ଯୁବଯୁବତୀ ।

ଟ୍ରେନ୍ ଛାଡ଼ିବାକୁ ଆଉ ଦୁଇ ମିନିଟ ! ଛୋଟ ଝିଅଟି ଖୁବ୍ କାନ୍ଦିଲା । ଜାୟଦମାଙ୍କ ଆଖି ମଧ୍ୟ ଛଳଛଳ । ସେ ଗୋଟିଏ ବଡ଼ ପ୍ୟାକେଟରେ ଇଣ୍ଡୋନେଶିଆର ଜାତୀୟ ସିଗାରେଟ "ଗୋଡାକା-ନେଟେକ୍" ଆଣିଥାନ୍ତି । ମୋ ହାତରେ ଦେଇ କହିଲେ, "ଇଏ ଆପଣଙ୍କ ବାପାଙ୍କ ପାଇଁ ।" ଛୋଟ ଝିଅଟି ଫୁଲାଏ ଲେଜେନ୍ଦ୍ର ଓ କେତୋଟି ସେଦେଶୀୟ ମୁଦ୍ରା ମୋ ପକେଟରେ ରଖିଦେଇ ଆହରି ଜୋରରେ କହିକହି ହୋଇ କାନ୍ଦିବାକୁ ଲାଗିଲା ।

ଏ ଅସହାୟ ମୂର୍ତ୍ତି ଅଜ୍ଞାତ ହେଲା । ଟ୍ରେନ୍ ଛାଡ଼ିବାର ଶେଷ ହୁଇସିଲ ହେବା ଉତ୍ତାରୁ ମୁଁ ଟ୍ରେନ୍‌କୁ ଆସି ଗୋଟିଏ କୋଣରେ ବସିଲି । ସେତେବେଳେ ବାହାରେ ବନ୍ଧୁ କଣ୍ଠରେ ଐକ୍ୟସଙ୍ଗୀତ—"ହାଲୋ ହାଲୋ ବାନ୍ଦୁଂ !"

ସମଗ୍ର ଦିନର ଟ୍ରେନଯାତ୍ରୀ । ପୂର୍ବରୁ କହିଛି, ଇଣ୍ଡୋ-ନେଶିଆର ରେଲଗାଡ଼ିଗୁଡ଼ିକ ଖୁବ୍ ଆଧୁନିକ ଧରଣର । ଶେଷ କମ୍ପାର୍ଟମେଣ୍ଟଟି ଗୋଟିଏ ଖୋଲା ବାରଣ୍ଡା ଭଳି । ସେଠାରେ ରେଲିଂରେ ବସି ପଶ୍ଚାତର ଅପସ୍ରୁୟମାନ ଦୃଶ୍ୟ ଦେଖିବାକୁ ଭାରି ଭଲ ଲାଗୁଥାଏ । କେତେବେଳେ ବଡ଼ବଡ଼ ପାହାଡ଼ର ସୁଡ଼ଙ୍ଗ ପଥ ଦେଇ, କେତେବେଳେ ଧାଡ଼ି ଧାଡ଼ି ନାରିକେଳ ଓ ଝାଉଁ-ଜାତୀୟ ଗଛସବୁର ଭିଡ଼ ଭିତରଦେଇ, କେତେବେଳେ କୁଳୁକୁଳୁ ପାର୍ବତ୍ୟ ଝରଣାର ମାଧୁର୍ଯ୍ୟକୁ ଉଚ୍ଛରେ ପକାଇ ଆମେ ଚାଲିଥାଉଁ ।

ଟ୍ରେନ୍‌ର ରେଷ୍ଟୋରାଁରେ ଦିବାଭୋଜନ ସମାପ୍ତ ହେଲା । କେତେପ୍ରକାର ମସଲାଯୁକ୍ତ ହଳଦିଆ ରଙ୍ଗର ଭାତ । ସେଥିରେ ଆମଲେଟ୍ ଟିକି ଟିକି କରି ମିଶାଇ ଦିଆଯାଇଥାଏ । ସାଥିରେ କିଛି ଫଳ ସାଲାଦ୍ ଏବଂ ବିଅର୍ ବା ଲେମୋନେଡ୍ । ଇଏ ହେଲା ଟ୍ରେନ୍‌ଯାତ୍ରୀମାନଙ୍କର ସାଧାରଣ ଖାଦ୍ୟ ।

ବହୁ ସମୟ ଶେଷ କାମରାର ଖୋଲା ବାରଣ୍ଡାରେ ବସି ବସି ବିରକ୍ତ ହୋଇଉଠିଥିଲି । ଏତିକବେଳେ ଆମ ସହ ପ୍ରୋଟୋକୋଲ୍-ରୂପେ ଯାଉଥିବା ବାନ୍ଦୁଂର ଜଣେ ଛାତ୍ରୀ ଆସି ହସି ହସି କହିଲେ; "ମୁଁ ବର୍ତ୍ତମାନ ଆପଣଙ୍କ ଆଗରେ ଡେଇଁପଡ଼ି ଆତ୍ମହତ୍ୟା କରିବି ।"

ମୁଁ କହିଲି, "ଆତ୍ମହତ୍ୟା ଏକ ବଡ଼ ଦାର୍ଶନିକ କଥା । ଭଲ କି ଖରାପ, ତାଉପରେ ମତଦ୍ୱୈଧ ଅଛି । ମୁଁ ଆପାତତଃ

ଆପଣଙ୍କୁ ବାଧା ଦେଉ ନାହିଁ । ତେବେ ଆପଣଙ୍କ ବାପାମାଆଙ୍କ ଠିକଣାଟା ଦେଇଯାଆନ୍ତୁ । ସେମାନଙ୍କୁ ଯଥାସମୟରେ ଜଣାଇଦେବା ମୋର କର୍ତ୍ତବ୍ୟ ।”

ସେ ହସିଲେ, “ମୁଁ ଭାବିଥିଲି, ଆପଣ ନର୍ଭସ୍ ହୋଇ ମୋତେ ଉଡ଼ଧରିବେ ବୋଲି । ଯାହାହେଉ, ଆପଣଙ୍କ ନିର୍ବିକାର ବ୍ୟବହାରର ପ୍ରତିବାଦସ୍ୱରୂପ ମୁଁ ଆଜି ଆତ୍ମହତ୍ୟା କରିବି ନାହିଁ ।”

ମୁଁ ପ୍ରଶ୍ନ କଲି, “ଆପଣଙ୍କ ଦେଶରେ ଆତ୍ମହତ୍ୟାର ହାର କିପରି ?” ସେ କହିଲେ, “ଆପଣ ଆମ ଜାତିର ମାନସିକ ଅବସ୍ଥା ଏଇଥିରୁ ଅନୁମାନ କରିବାକୁ ଚାହୁଁଛନ୍ତି ବୋଧ ହୁଏ । ଆତ୍ମହତ୍ୟା ତ ବହୁ କାରଣରୁ ହୁଏ । ମୁଁ ଅନ୍ୟାନ୍ୟ କାରଣ କଥା ଜାଣେ ନାହିଁ । ତେବେ ରୋମାଣ୍ଟିକ୍ ବ୍ୟାପାର ନେଇ ଯୁବକଯୁବତୀଙ୍କ ଭିତରେ ପୂର୍ବେ ବହୁତ ଆତ୍ମହତ୍ୟା ହେଉଥିଲା । ଦେଖାଗଲା, ଯେଉଁମାନେ ସବୁଠୁଁ ବେଶୀ ରୋମାଣ୍ଟିକ୍, ସ୍ୱାଧୀନତାସଂଗ୍ରାମବେଳେ ଏବଂ ମହାଯୁଦ୍ଧସମୟରେ ସେହିମାନେ ବେଶୀ ଆଗ୍ରହର ସହ ଜାତୀୟ ସୈନିକ ହୋଇଥିଲେ । ତାଙ୍କ ଭିତରୁ କେତେକ ସହିଦ ହେଲେ । ଯେଉଁମାନେ ବିପ୍ଳବ ଓ ଯୁଦ୍ଧପରେ ନିଜ ନିଜ ଘରକୁ ଫେରିଆସିଲେ, ସେମାନେ ଆତ୍ମହତ୍ୟାର ଦର୍ଶନକୁ ସ୍ୱାଭାବିକଭାବରେ ବିସର୍ଜନ ଦେଇ ଆସିଥିଲେ ।”

ବାହ୍ନଂ ଛାଡ଼ିବାବେଳେ ଆମ ସହ କେତେ ଝୁଡ଼ି ପାଉଁରୁଟି ଓ ଫଳ ଆସିଥିଲା । ସେଇଥିରୁ କେତୋଟି ଧରି ଅନ୍ୟତିକ କମ୍ପାର୍ଟ୍‌ମେଣ୍ଟର ଜଣେ ଗ୍ରେଟ ପିଲାକୁ ଡାକି ଦେଇଦେଲି । ସେ ଗୋଟିଏମାତ୍ର ଫଳ ଉଠାଇନେଇ ତାପରେ ମୋ ହାତ ଧରି ଜଣେ ଭଦ୍ରଲୋକଙ୍କ ପାଖକୁ ନେଇଗଲା । ଭଦ୍ରଲୋକଟି ପିଲାର ବାପା । ସେ ଜଣେ

ଇସ୍‌ଲାମ-ଯୁବଆନ୍ଦୋଳନ (Indonesian Islamic Youth Movement)ର ସକ୍ରିୟ କର୍ମୀ। ଧର୍ମ ନାମରେ ଅନୁଷ୍ଠାନ ହୋଇଥିଲେ ମଧ୍ୟ ଏମାନଙ୍କର ବହୁ ପ୍ରଗତିଶୀଳ କର୍ମଯୋଜନା ରହିଛି। ଧର୍ମ ନାମରେ ରହିଥିବା ଅନ୍ଧବିଶ୍ୱାସ, କୁସଂସ୍କାର ଓ ଯଥେଚ୍ଛାଚାରର ବିରୁଦ୍ଧରେ ଆଜି ବହୁ ଯୁବଆନ୍ଦୋଳନ ବିଦ୍ରୋହ କରୁଛି। ସବୁ ଅନୁଷ୍ଠାନଯାକ ନିଖିଳ-ଇଣ୍ଡୋନେଶୀୟ ନୁହେଁ। ଆଞ୍ଚଳିକ ପରିସ୍ଥିତିକୁ ନେଇ ଏସବୁ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ଜାତିର ପୁନର୍ଗଠନରେ ଏମାନଙ୍କ ଭୂମିକା କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ।

ସେଇ ଭଦ୍ରଲୋକଙ୍କ ସହ କେତେ ଘଣ୍ଟାର କଥାବାର୍ତ୍ତା-ଭିତରେ ମୁଁ ବିଶେଷକରି ଗାଁଗହଳର ଅବସ୍ଥା ସମ୍ପର୍କରେ ଅନୁସନ୍ଧାନ କରି ବୁଝିଥିଲି। ଇଣ୍ଡୋନେଶିଆର ପୁରପଲ୍ଲିରେ ଧୀରେ ଧୀରେ ଶିକ୍ଷାନୈତିକ ଚେତନା ବଢ଼ିଚାଲିଛି। ଏଥିପାଇଁ ସାଧାରଣ ସ୍କୁଲକଲେଜଶିକ୍ଷା ଯେତେ ଦାୟୀ, ତାଠାରୁ ବେଶୀ ଦାୟୀ ହେଉଛି ଅନ୍ୟାନ୍ୟ ବହୁବିଧ କାରଣରୁ ଲୋକସାଧାରଣଙ୍କର ରାଜନୈତିକ ଚେତନାର ଅଭିବୃଦ୍ଧି। ଯଥା—ଦୂର ପଲ୍ଲିଗାଁମାନଙ୍କରେ ବିଭିନ୍ନ ରାଜନୈତିକ ଦଳର ସଂଗଠିତ ପ୍ରବେଶ, ଟେଲିଭିଜନ, ଅଭିନୟ ଓ ରେଡ଼ିଓ ଜରିଆରେ ସର୍ବଦା ବିଭିନ୍ନ ସମସ୍ୟାର ଆଲୋଚନା ଇତ୍ୟାଦି।

ସହର ନଗରର ସ୍ତ୍ରୀଶିକ୍ଷା ଓ ସ୍ତ୍ରୀଜାଗରଣ କଥା ପୂର୍ବରୁ କହିଛି। ମଫସଲରେ ମଧ୍ୟ ଏହାର ପ୍ରଭାବ କମ୍ ନୁହେଁ। ଇସ୍‌ଲାମ କାହିଁକି, ପ୍ରାୟ ପ୍ରତ୍ୟେକ ପ୍ରାଚୀନ ଧର୍ମମତରେ ସ୍ତ୍ରୀମାନଙ୍କ ସ୍ୱାଧୀନତାଉପରେ ବହୁ ବାଧାମୂଳକ ନିୟମକାନୁନ ରହିଛି। ଆଜି ମଫସଲର ସ୍ତ୍ରୀଲୋକମାନେ ସେଇସବୁର ସଂଶୋଧନପାଇଁ ବିଦ୍ଧପରିକର। ବିଶେଷକରି ବହୁସ୍ତ୍ରୀବିବାହ ବିରୁଦ୍ଧରେ ସେମାନେ

ଆଜି ଖଣ୍ଡବିଧ୍ୱସ୍ତ । ତାହାପୂର୍ବ ବିପ୍ଳବପର୍ଯ୍ୟନ୍ତ ଏ ବିଷୟରେ କୌଣସି ପ୍ରଶ୍ନ କେବେ ଉଠି ନ ଥିଲା । କିନ୍ତୁ ଗୋଟିଏ ବଡ଼ ସାମାଜିକ ବିପ୍ଳବ ଘଟିଗଲେ ତା ସଙ୍ଗେ ସଙ୍ଗେ ତାର ବୈପ୍ଳବିକ ପ୍ରଭାବ ସମାଜର ଅନ୍ୟାନ୍ୟ ବହୁ ଘଟଣାଉପରେ ପ୍ରତିଫଳିତ ହେବା ସ୍ୱାଭାବିକ । ଆଜି ତାହାହିଁ ହୋଇଛି । ରାଜନୈତିକ ମୁକ୍ତିର ସ୍ୱାଦ ଚାଖିବାପରେ ଆଜି ଦେଶର ସବୁ ଶ୍ରେଣୀର ଜନସାଧାରଣ ସାମାଜିକ ବିକାଶର ପ୍ରତିବନ୍ଧକଗୁଡ଼ିକୁ ଦୂର କରିଦେବାପାଇଁ ଅଗ୍ରସର ହୋଇଛନ୍ତି ।

ରାଷ୍ଟ୍ରପତି ସୁକର୍ଣ୍ଣଙ୍କ ଜନପ୍ରିୟତା କଥା ଅବିସମ୍ବାଦିତ । କିନ୍ତୁ ପ୍ରଥମ ସ୍ତ୍ରୀ ବଞ୍ଚି ଥାଉଁଥାଉଁ ସେ ଦ୍ୱିତୀୟ ବିବାହ କରିଛନ୍ତି ବୋଲି ଇଣ୍ଡୋନେଶିଆର ନାରୀସମାଜ ଆଦର୍ଶର ସମ୍ମାନପାଇଁ ନିର୍ବାଚନ ସମୟରେ ତାଙ୍କ ବିରୁଦ୍ଧରେ ପ୍ରଚାର କରିଥିଲେ । କେତେକ ବିଶିଷ୍ଟା ସମାଜସେବିକାଙ୍କ ଦସ୍ତଖତରେ ସୁକର୍ଣ୍ଣଙ୍କୁ ଏହି କାରଣରୁ ଭୋଟ ନ ଦେବାପାଇଁ ନାରୀ-ଭୋଟରମାନଙ୍କୁ ନିବେଦନ କରା-ଯାଇଥିଲା ।

ସନ୍ଧ୍ୟା ହୋଇଆସିଲା ଓ ତା ସଙ୍ଗେ ସଙ୍ଗେ ପ୍ରଚୁର ପବନ ସହ ବର୍ଷା ଆସିଲା । ସେତେବେଳେ କୌଣସି ଏକ ପାର୍ବତ୍ୟ ନଦୀର ଶିଳାମୟ ଉପକୂଳ ଭିତରଦେଇ ଆମ ଟ୍ରେନ୍ ଗତି କରୁ-ଥାଏ । ପାହାଡ଼ତଳ ଦେଇ ବର୍ଷାରେ ଭିଜି ଭିଜି କେତୋଟି ପିଲା ଏକ ମଇଁଷିପଲ ଅଡ଼ାଇନେଇ ବିପର୍ଯ୍ୟସ୍ତଭାବରେ ଦଉଡ଼ୁଥାନ୍ତି । ମୁଣ୍ଡରେ ବେତପାତିଆ ଭଳି ଏକପ୍ରକାର ଲଟାରେ ବୁଣା ମୁନିଆ ମୁନିଆ ଟୋପି ଲଗାଇ କେତେ ଜଣ ନାବିକ ଛଲାତ୍-ଛଲାତ୍ ଶବ୍ଦ ସହକାରେ ଆହୁଲା ପିଟି ଏକ ନୌକା ବୋହିନେଉଥିଲେ । ତାପରେ ଘନ ଅନ୍ଧକାରଭିତରେ ବାହାରର ଚଳନ୍ତ ଛବିସବୁ ଧୂମ୍ରାଭ ହେଉଁ ହେଉଁ ଅସ୍ପଷ୍ଟ ହୋଇଆସିଲା ।




Digitized by srujan ka@gmail.com

ଯେତେବେଳେ ଜୋଗ୍‌ଜାକର୍ତ୍ତା ଷ୍ଟେସନରେ ପହଞ୍ଚିଲୁଁ, ସେତେବେଳେ ବାହାରେ ଖୁବ୍ ଝଡ଼ବର୍ଷା । କାମଗ୍ରବାହାରକୁ ବାହାରିବାର ଉପାୟ ନାହିଁ । ଆମ କାମରା ଜୋଗ୍‌ଜାକର୍ତ୍ତାପାଇଁ ନିର୍ଦ୍ଦିଷ୍ଟ ଥିଲା । ତେଣୁ ଟ୍ରେନ୍ ତାହାକୁ ଛାଡ଼ି ଚାଲିଗଲା ।

ପ୍ରାୟ ଘଣ୍ଟାଏ ଅପେକ୍ଷା କରିବାପରେ ଅବଶେଷରେ ବର୍ଷା ଟିକିଏ ପାତଳ ହୋଇଆସିବାରୁ ଆମେ ପଦାକୁ ବାହାରିଲୁଁ । ଏତେ ବର୍ଷାରେ ବି ଶହ ଶହ ଯୁବକଯୁବତୀ ଓଦାସରସର ହୋଇ ପୁଷ୍ପଗୁଚ୍ଛ ଓ ହାର ଧରି ଆମକୁ ସମ୍ବର୍ଦ୍ଧନା ଜଣାଇଲେ । ଥଣ୍ଡା ଲେମୋନେଡ୍-ମାନ ପିଇ ସଦଳବଳରେ ବସ୍‌ରେ ବସି ଆମ୍ଭେମାନେ ସ୍ଥାନୀୟ ଅଭ୍ୟର୍ଥନା ସମିତି ଅଫିସ ଅଭିମୁଖରେ ଚାଲିଲୁଁ ।


Digitized by srujan ka@gmail.com

# ଶ୍ରମିକ ଆନ୍ଦୋଳନ

ଇଣ୍ଡୋନେଶିଆର ଅନ୍ୟତମ ପୁରାତନ ମହାନଗରୀ ଜୋଗ୍‌ଜାକର୍ତ୍ତା । ଗୌରବମୟ ଇତିହାସର ଅଧିକାଂଶ ଏଇ ସ୍ଥାନରେ ସ୍ୱାଧୀନତା ଆନ୍ଦୋଳନର ବହୁ ସ୍ମରଣୀୟ ଘଟଣା ଘଟିଯାଇଛି । ଏକଦା ଏହା ଥିଲା ଦେଶର ରାଜଧାନୀ । ଆଜି ଦେଶଶାସନର ସୁବିଧାଦୃଷ୍ଟିରୁ ଜାକର୍ତ୍ତା ସହରକୁ ରାଜଧାନୀ ସ୍ଥାନାନ୍ତରିତ ହୋଇଥିଲେ ମଧ୍ୟ ଜୋଗ୍‌ଜାକର୍ତ୍ତାର ରାଜନୈତିକ ଓ ବ୍ୟାବସାୟିକ ଗୁରୁତ୍ୱ କିଛି କମ୍ ନୁହେଁ ।

ପ୍ରଶସ୍ତ ରାସ୍ତାକଡ଼ର ଗୋଟିଏ ସୁସଜ୍ଜିତ ହଲ୍‌ଘରେ ଆମେ ଆସି ପହଞ୍ଚିଲୁ । ସେଠାରେ ସହରର ମେୟର୍, ତାଙ୍କ ସ୍ତ୍ରୀ ଏବଂ ବିଶିଷ୍ଟ ନାଗରିକମାନେ ଆମମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ । ହଲ୍‌ଘରର କାନ୍ଥମାନଙ୍କ ଦେହରେ ପ୍ରାଚୀନ ଇଣ୍ଡୋନେଶୀୟ ପ୍ରାଚୀରଚିତ୍ରସବୁ ବିଭିନ୍ନ ରଙ୍ଗରେ ଅଙ୍କାଯାଇଥାଏ—ବଡ଼ ବଡ଼ ଭୟଙ୍କର ମୁଖବିଶିଷ୍ଟ ଡ୍ରାଗନ୍ ଓ ପ୍ରାଚୀନ ଅଧିବାସୀମାନଙ୍କର ଯୁଦ୍ଧକୌଶଳର ଚିତ୍ର । ଚିତ୍ରିତ ଜୀବଗୁଡ଼ିକ ସହ ଆମ ସୁପ୍ରାଚୀନ ପୁରାଣମାନଙ୍କରେ ବର୍ଣ୍ଣିତ ରାକ୍ଷସରାକ୍ଷସୀମାନଙ୍କ ଚେହେରାର ବହୁତ ସାମଞ୍ଜସ୍ୟ ଥିବାର ଲକ୍ଷ୍ୟ କରାଯାଇପାରେ ।

ସମ୍ବର୍ଦ୍ଧନା ସଭାପରେ ଆମମାନଙ୍କୁ ଦୁଇ ଦୁଇ ଜଣ କରି ସ୍ଥାନୀୟ ଭଦ୍ରଲୋକମାନଙ୍କ ଘରେ ଅତିଥି ହିସାବରେ ଛାଡ଼ିଦିଆଗଲା । ମୁଁ ରହିଥିଲି ଜଣେ ଅବସରପ୍ରାପ୍ତ ସରକାରୀ କର୍ମଚାରୀଙ୍କ ଘରେ ।

ପରଦିନ ସକାଳେ ଅଭ୍ୟର୍ଥନା ସମିତିର ବସ୍ ଆସି ଆମକୁ ସହରର ବିଭିନ୍ନ ଦର୍ଶନୀୟ ସ୍ଥାନ ଦେଖାଇବାପାଇଁ ନେଇଗଲା ।

ଏକ ବିରାଟ ମସ୍‌ଜିଦ୍—ତଳମହଲର ବିପୁଳ ଅଂଶ ବ୍ୟାପି ଗୋଟିଏ ଲାଇବ୍ରେରୀ । ଲାଇବ୍ରେରୀକୁ କେତେ ଖଣ୍ଡ ଭାରତୀୟ ପତ୍ରିକା ବି ଯାଉଥିବାର ଦେଖିଲି । ଭାରତବର୍ଷ ସମ୍ପର୍କରେ ବହି ଅନେକ; କିନ୍ତୁ ଅଧିକାଂଶ ଅଜ୍ଞାତନାମା ବିଦେଶୀ ଲେଖକମାନଙ୍କର ଲେଖା ।

ଇଣ୍ଡୋନେଶିଆର ଟ୍ରେଡ୍ ୟୁନିୟନ ଆନ୍ଦୋଳନ ଏସିଆର ଶକ୍ତିଶାଳୀ ଟ୍ରେଡ୍ ୟୁନିୟନ ଆନ୍ଦୋଳନମାନଙ୍କ ଭିତରେ ଅନ୍ୟତମ । ମୋର ବଡ଼ ଆଗ୍ରହ ଥିଲା ସେ ସମ୍ବନ୍ଧରେ କିଛି ତଥ୍ୟ ସଂଗ୍ରହ କରିବାପାଇଁ । ଅଭ୍ୟର୍ଥନା ସମିତିର ଅନୁମତିସହକାରେ ମୁଁ ଗୋଟିଏ ଦିନ ଗତାନୁଗତିକ କାର୍ଯ୍ୟସୂଚୀରେ ଯୋଗ ନ ଦେଇ ଜଣେ ପ୍ରୋଟୋକୋଲ୍ ବନ୍ଧୁଙ୍କୁ ନେଇ ଏକ ଟ୍ରେଡ୍ ୟୁନିୟନ କାର୍ଯ୍ୟାଳୟକୁ ଗଲି । ସେତେବେଳେ କାର୍ଯ୍ୟାଳୟ ବନ୍ଦ ଥିଲା; କିନ୍ତୁ ଖବର ପାଇ ଜଣେ ବିଶିଷ୍ଟ ଟ୍ରେଡ୍ ୟୁନିୟନ କର୍ମୀ ମୋ ସହ ସାକ୍ଷାତ୍ କରିବା-ପାଇଁ ତାଙ୍କର ଅନ୍ୟାନ୍ୟ ଜରୁରୀ କାମଦାମ ଛାଡ଼ି ଆସିଥିଲେ । ତାଙ୍କ ସହିତ କଥାବାର୍ତ୍ତା କରି ଓ ସେ ଦେଇଥିବା କାଗଜପତ୍ରମାନ ଦେଖି ଜାଣିପାରିଲି, ଇଣ୍ଡୋନେଶିଆର ସ୍ୱାଧୀନତା ଆନ୍ଦୋଳନରେ ଏବଂ ଜାପାନୀ ଆକ୍ରମଣ ବିରୁଦ୍ଧରେ ଶ୍ରମିକଶ୍ରେଣୀର ଭୂମିକା ଏକାନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ଡଚ୍ ଅଧୀନରେ ଶ୍ରମିକମାନେହିଁ ଥିଲେ ସର୍ବାଧିକ ନିଷ୍ପେଷିତ; ଜାପାନ ଆସି ଏଇ ଶ୍ରମିକମାନଙ୍କୁ ପୁଣି ଜବରଦସ୍ତ ତଥାକଥିତ "ସ୍ୱେଚ୍ଛା-ଶ୍ରମ-ବାହିନୀ"ରେ ଅନ୍ତର୍ଭୁକ୍ତ କରାଇ ବିଭିନ୍ନ ଅଧିକୃତ ଦେଶମାନଙ୍କୁ ପଠାଇ ଅସହ୍ୟ ଯନ୍ତ୍ରଣା ଦେଇଥିଲା ।

ଏହି ସମୟରେ ଜାପାନୀମାନଙ୍କ ଅତ୍ୟାଚାରଫଳରେ ତିରିଶ ହଜାର ଶ୍ରମିକ ମାଳୟରୁ ଶ୍ୟାମପର୍ଯ୍ୟନ୍ତ ପ୍ରସ୍ତୁତ ହେଉଥିବା ରେଳରାସ୍ତାପାଇଁ କାମ କରି ମୃତ୍ୟୁମୁଖରେ ପତିତ ହେଲେ । ଆଜି

ଇଣ୍ଡୋନେଶିଆର ଶ୍ରମିକଶ୍ରେଣୀ ଏହି ପଥକୁ "The Railroad of Death" ବୋଲି କହନ୍ତି ।

ଇଣ୍ଡୋନେଶିଆର ଶ୍ରମିକ ଆନ୍ଦୋଳନ ୧୯୦୮ ମସିହାଠାରୁ ସଂଗଠିତ ରୂପ ନେଇଥିଲା । ଏହିକାଳବେଳେ ରେଲ୍‌ୱେର ଶ୍ରମିକ-ମାନଙ୍କର ଏକ ସମ୍ମିଳନୀ ହୋଇ ଗୋଟିଏ ଟ୍ରେଡ୍ ୟୁନିୟନ ଗଠିତ ହେଲା । କ୍ରମଶଃ ଏହି ଟ୍ରେଡ୍ ୟୁନିୟନର ଆଦର୍ଶରେ ଅନୁପ୍ରାଣିତ ହୋଇ ଅନ୍ୟାନ୍ୟ ବିଭାଗର ଶ୍ରମିକମାନେ ସେମାନଙ୍କ ନିଜସ୍ୱ ଟ୍ରେଡ୍ ୟୁନିୟନ ଗଠନ କରିବାକୁ ଲାଗିଲେ ଏବଂ ସେମାନଙ୍କଠାରେ ପ୍ରାୟ ଚଉଦଟି ଶକ୍ତିଶାଳୀ ଟ୍ରେଡ୍ ୟୁନିୟନ ସଂସ୍ଥାର ଏକ କେନ୍ଦ୍ରୀୟ କାର୍ଯ୍ୟାଳୟ ସ୍ଥାପିତ ହେଲା । ଇଣ୍ଡୋନେଶିଆର ଜାତୀୟ ନେତା-ମାନଙ୍କ ନେତୃତ୍ୱରେ ଏବଂ ଏହି ସଂସ୍ଥାର ନିର୍ଦ୍ଦେଶ ଅନୁସାରେ ବିଶେଷକରି ୧୯୨୦ରୁ ପରବର୍ତ୍ତୀ ଛଅ ବର୍ଷପର୍ଯ୍ୟନ୍ତ ବହୁ ଧର୍ମଘଟ ଓ ଶ୍ରମିକ ଆନ୍ଦୋଳନଫଳରେ ଡଚ୍ ଶାସକଗୋଷ୍ଠୀ ସ୍ୱଭାବତଃ ଆତଙ୍କିତ ହୋଇପଡ଼ିଲେ ।

ଏହାପରେ ୧୯୨୬ ମସିହା । ଏସିଆ ମହାଦେଶର ଶ୍ରମିକ ଆନ୍ଦୋଳନର ଇତିହାସରେ ଏହା ଏକ ସ୍ମରଣୀୟ ବର୍ଷ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ବର୍ଷ ଜାଭାରେ ଏକ ନାହିଁ-ନ-ଥିବା ଶ୍ରମିକ ଆନ୍ଦୋଳନ ହେଲା ଏବଂ ସମଗ୍ର ଦେଶବ୍ୟାପୀ ତାହାର ଗଭୀର ପ୍ରତିକ୍ରିୟା ମଧ୍ୟ ଦେଖାଦେଲା । ଏହି ଆନ୍ଦୋଳନର ପ୍ରକୋପରେ ଡଚ୍ ଶାସନକଳ ଏକାବେଳେ ବିକଳ ହୋଇଯିବାକୁ ବସିଲା ।

ବିଦେଶୀ ସରକାର ତାର ସମସ୍ତ ଶକ୍ତି ପ୍ରୟୋଗ କରି ଏହି ଆନ୍ଦୋଳନକୁ ଦବାଇଦେବାକୁ ଉଦ୍ୟମ କଲା । କିନ୍ତୁ ଦିନ ପରେ

ଦିନ ଏହା ଖବରରୁ ଖବରତର ହୋଇଉଠିଲା । ସମସ୍ତ ବଗିଚା ଓ ଫାର୍ମରେ ତାଲା ପଡ଼ଗଲା ।

ଏହାପରେ ସରକାରଙ୍କୁ ଶ୍ରମିକମାନଙ୍କ ବିରୁଦ୍ଧରେ ପ୍ରକାଶ୍ୟରେ ଯୁଦ୍ଧ ଘୋଷଣା କରିବାକୁ ପଡ଼ିଲା । ସଶସ୍ତ୍ର ମିଲିଟାରୀ ଓ ପୋଲିସ ଫୌଜ ଯଥେଷ୍ଟ ହେଲା ନାହିଁ । ଏଥିପାଇଁ ସ୍ୱଚ୍ଛନ୍ଦ-ଭାବରେ ହଲାଣ୍ଡରୁ ସୈନ୍ୟବାହିନୀ ଆସିଲେ । ଦିନକୁ ଦିନ ଅମାନୁଷିକ ହତ୍ୟାକାଣ୍ଡ ବଢ଼ି ଚାଲିଲା । ସହସ୍ର ସହସ୍ର ଶ୍ରମିକଙ୍କର ନିର୍ମମ ନିଧନରେ, କାରାବରଣ ଓ ନିର୍ବାସନରେ ଚରଣଶେଷରେ ଏହି ଆନ୍ଦୋଳନର ସାମୟିକ ଅବସାନ ଘଟିଲା ସତ୍ୟ; କିନ୍ତୁ ଭବିଷ୍ୟତ୍ର ଶ୍ରମିକ ଏକତାର ଆବଶ୍ୟକତା ଓ ସମ୍ଭାବନା ସମ୍ପର୍କରେ ଏହା ପଥ ପ୍ରଶସ୍ତ କରି ଦେଇଗଲା ।

ଶ୍ରମିକ ଓ କୃଷକ ସମ୍ପ୍ରଦାୟ ଭିତରେ ଯୋଗାଯୋଗ ସ୍ଥାପିତ ହୋଇପାରି ନ ଥିବା ଯୋଗୁଁ ଏହି ଆନ୍ଦୋଳନ ଦୀର୍ଘସ୍ଥାୟୀ ହୋଇ ପାରି ନ ଥିଲା । ଏହା ପରେ ପରେ ସରକାର ଟ୍ରେଡ୍ ୟୁନିୟନ ଓ ସଭାସମିତିସମୂହକୁ ବେଆଇନ ଘୋଷଣା କଲା । ୧୯୩୫ ମସିହା ପର୍ଯ୍ୟନ୍ତ ବିଭିନ୍ନ ଟ୍ରେଡ୍ ୟୁନିୟନ ଆନ୍ଦୋଳନଭିତରେ ଆଉ ସହିତ ରହିବା ସମ୍ଭବପର ହୋଇ ନ ଥିଲା । ୧୯୩୫ ବେଳକୁ ପୁଣି ବହୁ ଟ୍ରେଡ୍ ୟୁନିୟନ ଭିନ୍ନ ଭିନ୍ନ ନାମରେ ସଂଗଠିତ ହେବାକୁ ଲାଗିଲା ।

ଜାପାନ ଇଣ୍ଡୋନେଶିଆକୁ କରଗତ କରିବା ସଙ୍ଗେ ସଙ୍ଗେ ପୁଣି ସମସ୍ତ ଅନୁଷ୍ଠାନକୁ ବେଆଇନ ଘୋଷଣା କଲା । ଏହା ବିରୁଦ୍ଧରେ ସମଗ୍ର ୧୯୪୩ ମସିହାବ୍ୟାପୀ ପ୍ରବଳ ଗଣବିଦ୍ରୋହ ଦେଖା ଦେଇଥିଲା ।

୧୯୩୭ ମେ ମାସରେ ପୂର୍ବ-ସୁମାତ୍ରାରେ ଇଣ୍ଡୋନେଶୀୟ ଟ୍ରେଡ୍ ୟୁନିୟନ ଫେଡ଼ରେସନ ଗଠିତ ହେଲା । ଏହାର ସଭ୍ୟ-ସଂଖ୍ୟା ଥିଲା ପ୍ରାୟ ଚାଳିଶ ଲକ୍ଷ ।

ବୃଡ଼ି ଯାଉଥିବା ବ୍ୟକ୍ତି କୁଟାଖିଅ ଧରି ରକ୍ଷା ପାଇବାର ଚେଷ୍ଟା କଲାଭଳି ଡଚ୍ ସରକାର ସେତେବେଳେ ଇଣ୍ଡୋନେଶିଆର କେତେକ ଶିଖି-ମନାଇଙ୍କୁ ନିଜର ହାତବାରିସି କରି ସାମ୍ରାଜ୍ୟବାଦୀ ଆଧିପତ୍ୟର ପୁନର୍ବିସ୍ତାର ସ୍ୱପ୍ନ ଦେଖୁଥାଏ । ଦେଶର କ୍ରମ-ପରିବର୍ତ୍ତିତ ପରିପ୍ରେକ୍ଷୀରେ ସେମାନେ ଠିକ୍ ଦେଖି ପାରୁଥିଲେ, ଔପନିବେଶିକ ଶୋଷଣର ସବୁଠୁ ବଡ଼ ପ୍ରତିବନ୍ଧକ ହିସାବରେ ଏଥର ଦେଖା ଦେଉଛି ଜାଗ୍ରତ ଶ୍ରମିକଶ୍ରେଣୀ ଓ ସେମାନଙ୍କର ସଂହତିପୀଠ ବିଭିନ୍ନ ଟ୍ରେଡ୍ ୟୁନିୟନ । ସଂଘବଦ୍ଧ ଟ୍ରେଡ୍ ୟୁନିୟନ ଆନ୍ଦୋଳନର ବିବର୍ଦ୍ଧମାନ ଶକ୍ତି ଓ ସାମର୍ଥ୍ୟକୁ ଦମନ କରିବାର କୌଣସି ଉପାୟ ସେତେବେଳେ ନ ଥିଲା । ତେଣୁ ଡଚ୍ ସରକାରର ବିଦେଶୀ ସୈନ୍ୟ ଓ ଗୁପ୍ତଚରମାନେ ବ୍ୟକ୍ତିଗତ ହତ୍ୟାକାଣ୍ଡ ଆରମ୍ଭ କଲେ । ଶ୍ରମିକନେତାମାନଙ୍କ ବିରୁଦ୍ଧରେ ସନ୍ତ୍ରାସବାଦୀ ଷଡ଼ଯନ୍ତ୍ର ଦେଶ ବ୍ୟାପୀ ଚାଲିଲା । କିଛି ଦିନପରେ ହସ୍ପିଟାଲ୍‌ରେ ଚିକିତ୍ସିତ ହେଉଥିବା ଦଶ ଜଣ ଶ୍ରମିକଙ୍କୁ ଡଚ୍‌ମାନେ ଗୁଳି କରି ହତ୍ୟା କଲେ । ବିନା ଆଲୋକ ଓ ବିନା ପବନରେ ଅନ୍ଧକୂପଭଳି ଟ୍ରେଞ୍ଚ ଟ୍ରେଞ୍ଚ ସେଲ୍ ଭିତରେ ଏକ ସମୟରେ ଶହ ଶହ ଟ୍ରେଡ୍ ୟୁନିୟନ କର୍ମୀଙ୍କୁ ଭର୍ତ୍ତି କରିଦିଆଗଲା ।

ଆଉ କିଛି ଦିନପରେ ଶ୍ରମିକ ଆନ୍ଦୋଳନର ଜଣେ ତେଇଶ ବର୍ଷ ବୟସ୍କ ତରୁଣ ନେତାଙ୍କୁ ଦକ୍ଷିଣ ସେଲିବିସ୍ ଦ୍ୱୀପର ଡଚ୍‌ସୈନ୍ୟମାନେ ଗୁଳି ସାହାଯ୍ୟରେ ହତ୍ୟା କଲେ । ଏହି ପୈଶାଚିକ ଘଟନାର ପ୍ରତିବାଦରେ ଇଣ୍ଡୋନେଶିଆର ସମଗ୍ର ନାଗ୍ରି-ଅନୁଷ୍ଠାନ,

ଯୁବସମାଜ ଓ ଶ୍ରମିକଶ୍ରେଣୀ ମୁଖର ହୋଇଉଠିଲେ । କ୍ରମଶଃ ସ୍ୱାଧୀନ ସରକାରଭିତରେ ଜନମତର ଶକ୍ତି ବଢ଼ିବା ସଙ୍ଗେ ସଙ୍ଗେ ଏବଂ ଟ୍ରେଡ୍ ୟୁନିୟନମାନଙ୍କର ଆତ୍ମରକ୍ଷା ଶକ୍ତି ଅଧିକରୁ ଅଧିକ ହେବା ସଙ୍ଗେ ସଙ୍ଗେ ବିଦେଶୀ ଔଦ୍ଧତ୍ୟର ଅବସାନ ଘଟିଲା । ତାହାର ଫଳରେ ଆଜ ଜାତିର ସ୍ୱାଗ୍ୟନିୟନ୍ତ୍ରଣରେ ଶ୍ରମିକ-ସଂଘସବୁର ଭୂମିକା ସୁସ୍ପଷ୍ଟ ହୋଇଉଠିଛି ।

ଏଠାରେ ଗୋଟିଏ କଥା ଏକାନ୍ତ ଉଲ୍ଲେଖଯୋଗ୍ୟ ଯେ, ଯେତେବେଳେ ଡଚ୍‌ମାନେ ଇଣ୍ଡୋନେଶିଆର ଶ୍ରମିକମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିଲେ, ସେତେବେଳେ ସେମାନଙ୍କ ନିଜ ଦେଶ ହଲାଣ୍ଡର ବହୁ ଟ୍ରେଡ୍‌ୟୁନିୟନ ଇଣ୍ଡୋ-ନେଶିଆର ଶ୍ରମିକମାନଙ୍କ ପ୍ରତି ପ୍ରଚୁର ସହାନୁଭୂତି ପ୍ରଦର୍ଶନ କରିଥିଲେ ଓ ନିଜ ସରକାରକୁ ଏଇ ଆତ୍ମଘାତୀ କାର୍ଯ୍ୟରୁ କ୍ରମଶଃ ବିରତ ହେବାକୁ ବାଧ୍ୟ କରିଥିଲେ ।

ବର୍ତ୍ତମାନ ଇଣ୍ଡୋନେଶିଆର କଳକାରଖାନା, ଫାର୍ମ ଏବଂ ଚାହା, ରବର ଓ ଆଖୁ ବଗିଚାମାନଙ୍କରେ ବିଭିନ୍ନ ଟ୍ରେଡ୍ ୟୁନିୟନ କାମ କରୁଛନ୍ତି । ଏମାନଙ୍କ ନେତୃତ୍ୱଉପରେ ବିଭିନ୍ନ ଦଳର ପ୍ରଭାବ ମଧ୍ୟ ରହିଛି । କିନ୍ତୁ ସମଗ୍ର ଦେଶବ୍ୟାପୀ ଶ୍ରମିକ-ଶ୍ରେଣୀ ଆଗରେ ସେମାନଙ୍କ ମୌଳିକ ସମସ୍ୟାସବୁ ଏତେ ସ୍ପଷ୍ଟ ଓ ସୁବୋଧ ହୋଇଉଠିଛି ଯେ, ଯେକୌଣସି ରାଜନୈତିକ ଦଳ ତା'ର ପ୍ରଭାବ ବିସ୍ତାର କରୁ ନା କାହିଁକି, ଏଇସବୁ ମୌଳିକ ଦାୟିତ୍ୱ ଭୁଲିଇବାକୁ ସେ ବାଧ୍ୟ । ଶ୍ରମିକମାନଙ୍କର ଅବସ୍ଥା, ଆନ୍ଦୋଳନ ଇତ୍ୟାଦି ଉପରେ କେତେକ ପତ୍ରପତ୍ରିକା ବିଶିଷ୍ଟ ବିଭାଗମାନ ରଖିଥିବାର ଦେଖିଲି । ସରକାରୀ ଦପ୍ତରରୁ ଓ ବିଭିନ୍ନ ଶ୍ରମିକକେନ୍ଦ୍ରରୁ ବହୁ ବୁଲେଟିନ୍ ଓ ପ୍ରଚାରପତ୍ର ନିୟମିତ

ଭାବରେ ପ୍ରକାଶ ପାଏ । ବର୍ତ୍ତମାନ ଟ୍ରେଡ୍ ୟୁନିୟନମାନଙ୍କର ଏକ ବଡ଼ ଦାୟିତ୍ୱ ହୋଇଛି ଶ୍ରମିକମାନଙ୍କୁ ଲେଖାପଢ଼ା ଶିଖାଇବା ।

ବହୁ ଆଲୋଚନା ଓ ଆଳାପ ପରେ ଟ୍ରେଡ୍ ୟୁନିୟନ କର୍ମୀଙ୍କଠାରୁ କିଛି ବହିପତ୍ର ସଂଗ୍ରହ କରି ବିଦାୟ ନେଲି ।

ମୋ ସହିତ ଥିବା ପ୍ରୋଟୋକୋଲ୍ ଗୋଟିଏ ଟ୍ୟାକ୍ସି ଡାକି ମୁଁ ଯେଉଁଠି ରହୁଥିଲି ସେଠାରେ ନେଇ ମୋତେ ଛାଡ଼ି ଆସିଲେ । ଯିବାବେଳେ ଆଉ କେତେକ ବଡ଼ ବଡ଼ ରାସ୍ତା ଓ ଦର୍ଶନୀୟ ସ୍ଥାନ ଦେଖାଇବାକୁ ସେ ଭୁଲି ନ ଥିଲେ ।

ପୁରାତନ ଓ ନୂତନର ଏକ ସୁନ୍ଦର ସମାବେଶ ଜୋଗ୍-ଜାକର୍ତ୍ତା । ଆଜି ଯେପରି ଜାକର୍ତ୍ତାର ଜନସଂଖ୍ୟା ଆଶାତୀତଭାବରେ ବଢ଼ିଚାଲିଛି, ଦିନେ ଜୋଗ୍‌ଜାକର୍ତ୍ତାର ଅବସ୍ଥା ମଧ୍ୟ ତଦ୍ରୂପ ଥିଲା । ଅବଶ୍ୟ ବର୍ତ୍ତମାନ ଆଉ ସେ ସମସ୍ୟା ନାହିଁ । ସହରର ପ୍ରାଚୀନ ପଥଘାଟର ନକ୍ସା ପରିବର୍ତ୍ତନ କରି, କୋଠାଘରସବୁ ଆଧୁନିକ ଆଦର୍ଶରେ ନିର୍ମାଣ କରି ସମଗ୍ର ସହରକୁ ଏକ ନୂତନ ଜୀବନ୍ୟାସ ଦେବାର ଉଦ୍ୟମ ହେଉଥିବାର ଲକ୍ଷ୍ୟ କଲି । ପ୍ରୋଟୋକୋଲ୍ କହୁଥିଲେ, "ଏକଦା ଏଇ ସହରଟି ଥିଲା ସମୁଦାୟ ଦେଶର ଏକ କ୍ଷୁଦ୍ର ସଂସ୍କରଣ । ବୋର୍ଣ୍ଣିଓଠୁଁ ଆରମ୍ଭ କରି ମେଦାନଠୁ ଆରମ୍ଭ କରି ଦେଶର ସମସ୍ତ ଅଞ୍ଚଳରୁ ସମସ୍ତ ଦ୍ୱୀପରୁ ଏହା ସବୁ କିସମର ବ୍ୟକ୍ତିଙ୍କୁ କେବଳ ଆମଦାନୀ କରୁ ନ ଥିଲା, ସେମାନଙ୍କର ଏକ ଚମତ୍କାର ସମନ୍ୱୟ ମଧ୍ୟ ସାଧନ କରିପାରିଥିଲା । ତେଣୁ ଇଣ୍ଡୋନେଶୀୟ ସଂସ୍କୃତି ଏକତା ଦିଗରେ ଜୋଗ୍‌ଜାକର୍ତ୍ତାର ଐତିହାସିକ ଅବଦାନ ଅନାଦୃତ ରହିବଛି ।

ଏବେ ବି ମୁଁ ଲକ୍ଷ୍ୟ କରୁଥିଲି, ଜୋଗ୍‌ଜାକର୍ତ୍ତାର ସେଇ ସମନ୍ୱୟଧର୍ମୀ ବିଶେଷତ୍ୱ ଅବଲୁପ୍ତ ହୋଇ ନାହିଁ ।

ଆଜି ଇଣ୍ଡୋନେଶିଆର ରାଷ୍ଟ୍ରନୀତିବିତ୍‌ମାନେ ଅତି ବାଦିକ ଉଦ୍ୟମ ଚଳାଇଛନ୍ତି—ଇଣ୍ଡୋନେଶିଆ ଯେ ଗୋଟିଏ ରାଷ୍ଟ୍ର, ସମସ୍ତ ଅଧିବାସୀ ଯେ ଏକ ଅଖଣ୍ଡ ମାତୃଭୂମିର ସନ୍ତାନ, ଏକଥା ଯେପରି କେହି ଭୁଲି ନ ଯାନ୍ତି । ପରବର୍ତ୍ତୀ ସମୟରେ ମୁଁ ଏହାର ଆଉ ଏକ ପ୍ରମାଣ ପାଇଥିଲି, ଯେତେବେଳେ ଏର୍‌ଲଙ୍ଗା ବିଶ୍ୱ-ବିଦ୍ୟାଳୟରେ ଆମକୁ ସମ୍ବର୍ଦ୍ଧନା ଦିଆଯାଇଥିଲା । ନବନିର୍ମିତ ଏଇ ବିଶ୍ୱବିଦ୍ୟାଳୟ ହଲ୍‌ରେ ଆମକୁ ସ୍ୱାଗତ ଜଣାଇ ବିଶ୍ୱ-ବିଦ୍ୟାଳୟର ଅଧ୍ୟକ୍ଷ କହିଥିଲେ, "ଏର୍‌ଲଙ୍ଗା ବିଶ୍ୱବିଦ୍ୟାଳୟର ନାମ କରଣପଛରେ ଏକ ଇତିହାସ ରହିଛି । ବହୁ କାଳ ପୂର୍ବେ ଜାଭା ଦ୍ୱୀପରେ ଜଣେ ଖୁବ୍ ଖ୍ୟାତନାମା ରାଜା ଥିଲେ । ସେତେବେଳେ ବାଲି ଦ୍ୱୀପ, ଜାଭା, ଏସବୁ ସ୍ୱତନ୍ତ୍ରଭାବରେ ସ୍ୱାଧୀନ ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଜାଭା ଦ୍ୱୀପର ଏହି ରାଜା ବାଲି ଦ୍ୱୀପର ତତ୍କାଳୀନ ରାଜାଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ମହାରାଜା ଏର୍‌ଲଙ୍ଗା ହେଉଛନ୍ତି ଏଇ ଦମ୍ପତିଙ୍କର ପୁତ୍ର । ଜାଭା ଦ୍ୱୀପ ଓ ବାଲି ଦ୍ୱୀପର ଏକତାର ପ୍ରତୀକ ସ୍ୱରୂପରେ ତଥା ଅନ୍ୟାନ୍ୟ ବହୁ କାର୍ଯ୍ୟକଳାପ ଯୋଗୁଁ ମହାରାଜା ଏର୍‌ଲଙ୍ଗା ଇତିହାସରେ ସ୍ମରଣୀୟ । ତେଣୁ ତାଙ୍କର ନାମ ଅନୁସାରେ ଏ ବିଶ୍ୱବିଦ୍ୟାଳୟର ନାମକରଣ ହୋଇଛି ।"

ଜୋଗ୍‌ଜାକର୍ତ୍ତାର ଯେଉଁ ବ୍ୟକ୍ତିଙ୍କ ପରିବାରରେ ମୁଁ ଅତିଥି ହୋଇଥିଲି, ସହରର କୋଳାହଳଠାରୁ ତାଙ୍କ ଘର କିଛି ଦୂରରେ । ସ୍ୱାମୀ, ସ୍ତ୍ରୀ, ଦୁଇ ପୁଅ ଓ ତିନି ଝିଅ । ମୁଁ ଯିବାବେଳକୁ ସେମାନେ ସମସ୍ତେ ଅପେକ୍ଷା କରି ରହିଥିଲେ । ମୁଁ ବିଳମ୍ବ କରିଥିବା ହେତୁ

କ୍ଷମା ମାଗିଲି । ଗୃହକର୍ତ୍ତ୍ରୀ କହିଲେ, "କ୍ଷମା ଦେବାର କିଛି କାରଣ ନାହିଁ ପୁଅ ! ତୁମପାଇଁ ଅପେକ୍ଷା କରିବାରେ ଆମର ଗୌରବ ଅଛି, ବିଶେଷକରି ତୁମେ ଯେତେବେଳେ ଭାରତୀୟ ।"

ଗୃହକର୍ତ୍ତା କହିଲେ, "ପୂର୍ବେ ପିଲାପିଲିମାନଙ୍କୁ ଆଦର କରି ବଡ଼ମାନେ କହୁଥିଲେ, 'ପାଠ ପଢ଼ିଲେ ତୁ ୟୁରୋପ ଯିବୁ ।' ବର୍ତ୍ତମାନ ସେ ମନୋବୃତ୍ତିର ପରିବର୍ତ୍ତନ ହୋଇଗଲାଣି । ଏଣିକି ଆମ ପୁଅମାନେ ଆମ ନାତିମାନଙ୍କୁ କହୁଛନ୍ତି, 'ବଡ଼ ହେଲେ ତୁ ଭାରତ ଦେଖିବୁ, ଚୀନ ଦେଖିବୁ ।' ଭାରତ, ଚୀନ ଇତ୍ୟାଦି ଆମର ପୁରାତନ ବନ୍ଧୁ । ଶହ ଶହ ବର୍ଷ ଧରି ଆମେ ୟୁରୋପକୁ ଯେପରି ଭାବରେ ଚାହିଁଛୁ, ସେ ଚାହାଣି ଆଜି ବି ସହସ୍ର ସହସ୍ର ଇଣ୍ଡୋନେଶୀୟଙ୍କ ଦେହରେ କ୍ଷତବିକ୍ଷତ ରୂପ ନେଇ ରହିଛି । ବର୍ତ୍ତମାନ ବହୁ ଦିନପରେ ସମୟ ଆସିଛି, ଆମେ ପରସ୍ପରକୁ ଚାହିଁବା ଉଚିତ ।"

ଗୃହକର୍ତ୍ତା ବଡ଼ ଭାବପ୍ରବଣ ହୋଇଉଠୁଥିଲେ । ନାନା କଥାବାର୍ତ୍ତା ଭିତରେ ଆମ ଖିଆପିଆ ଶେଷ ହେଉଁ ହେଉଁ ବାହାରେ ଅଭ୍ୟର୍ଥନା ସମିତିର ବସ୍ ଆସି ଛିଡ଼ା ହେଲା । ଉପରଓଳିର ପ୍ରୋଗ୍ରାମ୍ ଅନୁସାରେ ସହରର ଆଉ କେତେକ ସ୍ଥାନ ପରିଦର୍ଶନ କଲୁଁ । ତହିଁ ପରଦିନ ପ୍ରଭାତରେ ପୁଣି ଜୋଗଜାକର୍ତ୍ତାରୁ ବିଦାୟ ନେଲୁଁ । ଗୃହକର୍ତ୍ତା, ତାଙ୍କ ସ୍ତ୍ରୀ ଓ ପିଲାପିଲିମାନଙ୍କୁ ସଶ୍ରଦ୍ଧ ଅଭିବାଦନ ଜଣାଇ ଆସିଲି । ସେମାନେ ଆସି ବସ୍ ଅଦୃଶ୍ୟ ହେବାଯାଏ ରାସ୍ତାରେ ଛିଡ଼ା ହୋଇ ରହିଲେ ।

ଷ୍ଟେସନରେ ମେୟର୍ ଏବଂ ଅନ୍ୟାନ୍ୟ ବହୁ ବିଶିଷ୍ଟ ନାଗରିକ ଓ ଛାତ୍ରଗଣ ଆମକୁ ବିଦାୟ ଦେଲେ । ଅତି ପୁରାତନ ସହର ଜୋଗଜାକର୍ତ୍ତାକୁ ଛାଡ଼ି ଏଥର ଆମର ଟ୍ରେନ୍ ସମୁଦ୍ରତଟବର୍ତ୍ତୀ ବନ୍ଦର-ନଗରୀ ସୁରବାୟା ଅଭିମୁଖରେ ଆମକୁ ନେଇ ଚାଲିଲା ।

# ସମୁଦ୍ର-ନଗରୀ ସୁରବାୟା

ଏଥର ଆମର ଟ୍ରେନ୍‌ଯାତ୍ରାରେ ଆଉ କିଛି ବିଶେଷତ୍ୱ ଥିଲା । ରେଲରାସ୍ତା ତ ବନ୍ଧୁର ହୋଇ ନ ପାରେ, ତେବେ ପରିବେଶ ବଡ଼ ବିପର୍ଯ୍ୟସ୍ତଙ୍କ ଭଳି ମନେ ହେଉଥିଲା । କ୍ୱଚିତ୍ ଗ୍ରାମପଲ୍ଲୀ । ଅଧିକାଂଶ ପଥ ପର୍ବତ, ବାଲୁକାପ୍ରାନ୍ତର ବା ଜଙ୍ଗଲରେ ସମାକୀର୍ଣ୍ଣ ।

ସବୁଠୁଁ ଉଲ୍ଲେଖଯୋଗ୍ୟ କଥା ହେଉଛି, ଟ୍ରେନ୍‌ଟିର ଆଗରେ ଏବଂ ପଛରେ ଦୁଇଟି ତୋପବାହୀ କାମରା ଖଞ୍ଜା ଯାଇଥାଏ । ଜଣେ ଇଣ୍ଡୋନେଶୀୟ ଭଦ୍ରଲୋକଙ୍କୁ କାରଣ ପଚାରି ବୁଝିଲି, ଏସବୁ ଅଞ୍ଚଳ ନିରାପଦ ନୁହେଁ । ବିଶେଷକରି ସମ୍ପ୍ରତି ଏଇସବୁ ଦୁର୍ଭେଦ୍ୟ ଅଞ୍ଚଳ କେତେକ ଅସାମାଜିକ ସନ୍ତ୍ରାସବାଦୀ ଦଳର କାର୍ଯ୍ୟକ୍ଷେତ୍ର ହୋଇପଡ଼ୁଛି ଏବଂ ହତ୍ୟା, ଲୁଣ୍ଠନରାଜ ଓ ରାହାଜାନି ସେମାନଙ୍କର ଦୈନନ୍ଦିନ କାର୍ଯ୍ୟକଳାପରେ ପରିଣତ ହୋଇଛି ।

ଭାବୁଥିଲି, ଆଉ କେତେ ସଂଗ୍ରାମପରେ ଗୋଟିଏ ଜାତି ନିଶ୍ଚିନ୍ତ ହୋଇ ରହିପାରେ !

ଉପରଓଳି ପ୍ରାୟ ଗୃରିଟା ସମୟରେ ଆମେ ସୁରବାୟାର ପ୍ଲାଟଫର୍ମ ଅତିକ୍ରମ କରି ପଦାକୁ ଆସିବାମାତ୍ରେ ଗ୍ଲାଡିଓଲିଙ୍କ ସମେତ ଏକ ବିପୁଳ ଜନତା ଆମକୁ ସଶ୍ରଦ୍ଧ ଅଭିନନ୍ଦନ ଜଣାଇଲେ । ସେଠିବେଳକୁ ଆମ ସହିତ ଚୀନ ଓ ମେକ୍ସିକୋ ପ୍ରତିନିଧି ଦଳର ଏକ ଅଂଶ ମଧ୍ୟ ଯୋଗ ଦେଇ ସାରିଥିଲେ । ପ୍ରତିନିଧିମାନଙ୍କୁ ନେଇ ଏଠାରେ ବସ୍ ପ୍ରଥମେ ସ୍ଥାନୀୟ କର୍ପୋରେସନ ହଲରେ ଉପନୀତ ହେଲା ଏବଂ ସେଠାରେ ଆମକୁ ଜୋଗଜାକର୍ତ୍ତା ଭଳି ମେୟର ଆସି

ସ୍ୱାଗତ ଜଣାଇଲେ । ଦେଖିଲି, ପ୍ରତ୍ୟେକ ସ୍ଥାନରେ ସୁସଙ୍ଗଠିତ ଅଭ୍ୟର୍ଥନା ସମିତି ପୌରସଭା ଓ ଅନ୍ୟାନ୍ୟ ନାଗରିକ ଅନୁଷ୍ଠାନ ସହ ସହଯୋଗ କରି କାମ କରୁଛି ।

ପ୍ରାଥମିକ ସମ୍ବର୍ଦ୍ଧନା ପରେ ପ୍ରତିନିଧି ଦଳକୁ ତିନି ଦଳରେ ବିଭକ୍ତ କରି ସହରର ତିନୋଟି ପ୍ରଥମ ଶ୍ରେଣୀର ହୋଟେଲରେ ରଖାଇ ଦିଆଗଲା ।

ଅତୁଳନୀୟ ପ୍ରାକୃତିକ ପରିବେଷ୍ଟନୀରେ ବିକଶିତ ସହର ସୁରବାୟା । ମନେ ହେଉଥିଲା, ଏଠାକାର ନିର୍ମାଣମାନ ବନ୍ଦର-କାମ ସୁସମ୍ପନ୍ନ ହେବାପରେ ଏହା ମଧ୍ୟ ଦିନେ ବାନ୍ଦୁଂଭଳି ଏକ ଚମତ୍କାର ସହର ହୋଇଉଠିବ । ସୁନ୍ଦର ସମୁଦ୍ରକୂଳୀୟ ଜଳବାୟୁ ଓ ପ୍ରାକୃତିକ ପରିବେଶ ।

ପରଦିନ ପ୍ରଭାତରେ ଆମେ ଯାଇ ନୌବାହିନୀ ଶିକ୍ଷାକେନ୍ଦ୍ର ପରିଦର୍ଶନ କଲୁଁ । ନୌବହରର ଯୁବକମାନେ ଆମକୁ ଗଭୀର ଆନ୍ତରିକତାସହକାରେ ସ୍ୱାଗତ କଲେ ଓ ସେମାନଙ୍କ ଶିକ୍ଷାୟତନର ବିବିଧ ଅଂଶ ସହ ପରିଚିତ କରାଇଦେଲେ । ବହୁଦୂରରେ ଆକାଶ-ମାର୍ଗରେ ଶତ୍ରୁପକ୍ଷର ବିମାନ ଆବିର୍ଭୂତ ହେଲେ ତାକୁ ଅନାୟାସ କରି କପରି ବିମାନଵିଧ୍ୱଂସୀ କମାଣଦ୍ୱାରା ଖସାଇଦେବାକୁ ହୁଏ, ସେକଥା ଏକପ୍ରକାର ସ୍ୱତନ୍ତ୍ରନିର୍ମିତ ଚମ୍ବୁଭିତରେ ଯୁଦ୍ଧାଭିନୟ ଓ ନକଲି ଅସ୍ତ୍ରପ୍ରୟୋଗ ସାହାଯ୍ୟରେ ଆମକୁ ବୁଝାଇ ଦିଆଗଲା । ବିଭିନ୍ନ ଅସ୍ତ୍ରାଗାର, ସାମରିକ ପାଠାଗାର, ଶିକ୍ଷାର୍ଥୀମାନଙ୍କର ସୁନିର୍ମିତ ଆବାସଗୃହ ଆଦି ଦେଖାଇ ତାପରେ ଆମକୁ ପ୍ରକାଣ୍ଡ ଏକ ଭୋଜନଗୃହଭିତରକୁ ନେଇ ଗୁଡ଼ଚାଉଳ-ଚୂର୍ଣ୍ଣ ଓ କଦଳୀମିଶ୍ରଣରେ ପ୍ରସ୍ତୁତ ଏକପ୍ରକାର ଛଙ୍କାପିଠା ଓ କଫିଦ୍ୱାରା ଆପ୍ୟାୟିତ କରାଗଲା । ନୌଯୁଦ୍ଧ-ଘସଦର ସଭାପତି ଭାଷଣରେ କହିଲେ, "ବହୁ ସୁପ୍ରାଚୀନ

ସଭ୍ୟ ଦେଶ ସହ, ବିଶେଷକରି ଭାରତବର୍ଷ ସହ ଇଣ୍ଡୋନେଶିଆର ବାଣିଜ୍ୟକ ସମ୍ପର୍କ ଇତିହାସ-ବିଶ୍ରୁତ ଏବଂ ଏହା ନୌପଥରେ ହେଉଥିବା ଯୋଗୁଁ ନାବିକମାନେହିଁ ସଭ୍ୟତା ଓ ସମ୍ପର୍କ ପ୍ରତିଷ୍ଠାର ଅଗ୍ରଦୂତ । ସେଇ ପ୍ରାଚୀନ ମନୀଷୀମାନଙ୍କର ଉତ୍ତରବାହିନୀରୂପେ ଇଣ୍ଡୋନେଶିଆର ନୌସୈନ୍ୟମାନେ ଗର୍ବିତ ବୋଧ କରୁଛନ୍ତି । ପୂର୍ବେ ନୌବାହିନୀରେ ଯୋଗ ଦେବାଟାକୁ ଏକ ଅସମ୍ମାନଜନକ କାର୍ଯ୍ୟ ବୋଲି ବହୁ ଲୋକେ ମନେ କରୁଥିଲେ । ଏବେ ସେ ଧାରଣା-ଉପରେ ବୈପ୍ଳବିକ ପରିବର୍ତ୍ତନ ସାଧିତ ହୋଇଛି । ଆଜି ମାତୃ-ଭୂମିର ସୁରକ୍ଷାପାଇଁ ଆମର ଏକ ଜୋରଦାର ନୌବାହିନୀ ଆବଶ୍ୟକ ।"

ମୋ ପାଖରେ ଜଣେ ସାମରିକ ଅଫିସର୍ ବସିଥିଲେ । ସେ ହଠାତ୍ ଉତ୍ତେଜିତଭାବରେ କହିଉଠିଲେ, "ହେ ମୋର ତରୁଣ ବନ୍ଧୁ ! ଆପଣ ଭୂଗୋଳରେ ପଢ଼ିଛନ୍ତି, ଆମର ଜନ୍ମଭୂମି ଏକ ଭାସମାନ ଦ୍ୱୀପମାଳା—ପ୍ରକୃତିର ସୃଷ୍ଟି ଅନୁସାରେ । କିନ୍ତୁ ଆପଣ ଦେଖିବେ, ହଁ, ଆପଣ ଏକୁଟିଆ କାହିଁକି, ପୃଥିବୀର ସମସ୍ତେ ଦେଖିବେ ଯେ, ରାଜନୀତିରେ ଆମେ ଆଉ ଭାସମାନ ହୋଇ ରହିବାକୁ ଚାହୁଁନା । ଆମ ଦେଶକୁ ଏକ ଚିରଞ୍ଜୀବ ସ୍ଥିତିଶୀଳ ରଷ୍ଟ୍ର କରିବାପାଇଁ ଆମେ ଯେଉଁ ଉଦ୍ୟମ କରୁଛୁ, ଶକ୍ତିଶାଳୀ ନୌବାହିନୀ ଗଠନ ତାର ଏକ ନମୁନା ।" ସେ ଖୁବ୍ ଉତ୍ତେଜିତ ହୋଇ ଉଠିଥିଲେ ଏବଂ ପରବର୍ତ୍ତୀ କଥାଗୁଡ଼ିକ ଆଉ ଇଂରାଜୀରେ ନ କହି ନିଜ ଭାଷାରେ କହିବାକୁ ଲାଗିଲେ ।

ସହରତଳିର କଳୀଯୁ ଭୂଇଁସବୁ ଅତିକ୍ରମ କରି ଆମର ବସ୍ ଏହାପରେ ବନ୍ଦର ଆଡ଼କୁ ଚାଲିଲା । ଏହିସବୁ ଅଞ୍ଚଳରେ ଜନସାଧାରଣଙ୍କ ରହିବାର ଢଙ୍ଗ ବଡ଼ ଅଦ୍ଭୁତ ଲାଗୁଥିଲା

ଗୋଟିଏ ଘରର କେତୋଟି କୋଠରୀ ହୁଏତ ସ୍ଥଳଭାଗରେ, ଅନ୍ୟ କେତୋଟି କୋଠରୀ ଯାଇ ପାଣିଭିତରେ କାଠ ପୋତା ହୋଇ ତାହାଉପରେ ନିର୍ମିତ ହୋଇଛି । ସମୁଦ୍ର-ଉପକୂଳରୁ ଚାହିଁଲେ ଅନତିଦୂରରେ ମଦୁରା ଦ୍ୱୀପର ସବୁଜ ଉପକଣ୍ଠ ଦୃଷ୍ଟି-ଗୋଚର ହୁଏ । ଏସବୁ ଦୃଶ୍ୟ ଏତେ ମଧୁର ଯେ, ଇଚ୍ଛା ହେଉଥିଲା ଶିକାର କରି ସେ ଦ୍ୱୀପର ପାହାଡ଼ପର୍ବତରେ ଆବାଜ ତୋଳିବା ନିମନ୍ତେ ।

ଗୋଟିଏ ବାଲୁକା-ପାହାଡ଼ର ପାଦଦେଶରେ ମୋଟର ଦୁଇଟି ରଖି ଆମ୍ଭେମାନେ ତା ଉପରକୁ ଚଢ଼ିଗଲୁଁ । ସିର୍‌ସିର୍ ସୁନ୍ଦର ହାଉଆରେ ଗୁଡ଼ିକଙ୍କ ଭଳି ଏକପ୍ରକାର ଗୁଳ୍ମଜ ବସ୍ତୁ ଇତସ୍ତତଃ ଉଡ଼ିଁ ବୁଲୁଥିଲା । ସାଙ୍ଗରେ ଆସିଥିବା ଖାଦ୍ୟପାନୀୟର କଞ୍ଚିତ୍ ସଦ୍‌ବ୍ୟବହାର କରି ସମବେତ ସ୍ୱରରେ ସଙ୍ଗୀତ ଆରମ୍ଭ କଲୁଁ । ସେତେବେଳକୁ ଇଣ୍ଡୋନେଶିଆର ଗୋଟିଏ ଜନପ୍ରିୟ ଦେଶପ୍ରେମୀ ସଙ୍ଗୀତ ଆମେ ସମସ୍ତେ ଶିଖିନେଇଥାଉଁ—"ସୋରା ସୋରା ବାର୍‌ଗମ୍ବୀରା, ବାର୍‌ଗମ୍ବୀରା ସେମୁଆ । ପାସ୍ତି ବେବାସ୍ ନାଗ୍ରିକାତା, ଇଣ୍ଡୋନେଶିଆ ମାର୍ଦ୍ଦେକା ।" ଗୀତଟିର ଅର୍ଥ—ସମସ୍ତଙ୍କୁ ଆନନ୍ଦଉଲ୍ଲାସଭିତରେ ହାତ ମିଳାଇବାକୁ ଅନୁରୋଧ, ଯେହେତୁ ଇଣ୍ଡୋନେଶିଆ ମୁକ୍ତି ହାସଲ କରିଛି ।

ଏକ ପୂର୍ଣ୍ଣ ବୈଜ୍ଞାନିକ ଯୋଜନା ଅନୁସାରେ ଏଇ ନୂତନ ବନ୍ଦରର ନିର୍ମାଣକାର୍ଯ୍ୟ ଚାଲିଛି । ଅକ୍ଳାନ୍ତ ପରିଶ୍ରମ କରି ଅସଂଖ୍ୟ ଶ୍ରମିକ ସମୁଦ୍ର-ଅଭ୍ୟନ୍ତରକୁ ବିରାଟ କୃତ୍ରିମ ବନ୍ଧଟିଏ ପ୍ରସ୍ତୁତ କରି ନେଉଛନ୍ତି । ଶହ ଶହ ଗାଡ଼ି, ଷ୍ଟିମରର ସମାବେଶ ।

ଫେରୁଥିବା ପଥରେ ଦେଖିଲୁଁ, ବନ୍ଦରଠୁଁ ଅଦୂରବର୍ତ୍ତୀ ଏକ ବିଶାଳ ସିମେଣ୍ଟ ଫ୍ୟାକ୍ଟ୍ରିରେ ପ୍ରଚୁର ସିମେଣ୍ଟ ଉତ୍ପାଦିତ ହେଉଛି

ଅନ୍ୟ ଏକ ବିଜ୍ଞାନାଗାରରେ ବିଭିନ୍ନ ପ୍ରକାର ମୃତ୍ତିକାଉପରେ ଗବେଷଣା ଚାଲିଛି । ଏସମସ୍ତ କାମର ଦାୟିତ୍ୱ ନେଇଛନ୍ତି, ଇଣ୍ଡୋନେଶିଆର ନିଜସ୍ୱ ଇଞ୍ଜିନିୟର, ବୈଜ୍ଞାନିକ ଓ ବିଶେଷଜ୍ଞ-ମାନେ । ସୁରବାୟାର ଆଖପାଖ ଅଞ୍ଚଳରେ ସେଦିନର ଭ୍ରମଣ ଶିଳ୍ପ-ସମୃଦ୍ଧି ମାର୍ଗର ଯାତ୍ରୀ ଇଣ୍ଡୋନେଶିଆ ସହ ଆମ୍ଭମାନଙ୍କୁ କେତେକ ପରିମାଣରେ ପରିଚିତ କରାଇଦେଲା ।

ସିଙ୍ଗାପୁରରେ ଯେପରି ଶିଖମାନେ ନାନା ପ୍ରକାର ବ୍ୟବସାୟ-ପତ୍ର କରି ଭାରତୀୟ ଅନ୍ୟାନ୍ୟ ଜାତି ଅପେକ୍ଷା ବହୁତ ବେଶୀସଂଖ୍ୟକ ହୋଇ ରହିଛନ୍ତି, ଇଣ୍ଡୋନେଶିଆର ବିଭିନ୍ନ ସହର ନଗରରେ ସେହିପରି ମଧ୍ୟ-ଭାରତୀୟ ଓ ଗୁଜରାଟ ଅଞ୍ଚଳର ଅନେକ ଲୋକ ବ୍ୟବସାୟୀ ହିସାବରେ ରହିଛନ୍ତି । ମୁଖ୍ୟତଃ ଲୁଗାପଟା ବ୍ୟବସାୟ ଏମାନଙ୍କର ପେଷା । ସୁରବାୟାରେ ଭାରତୀୟ ବ୍ୟବସାୟୀ ସଂଘର ସଭାପତି ସେଦିନ ରାତିରେ ଆମକୁ ତାଙ୍କ ଏକ ପ୍ରୀତିଭୋଜନରେ ଆପ୍ୟାୟିତ କଲେ । ୧୯୪୦ରୁ ୧୯୪୮ ପର୍ଯ୍ୟନ୍ତ ଇଣ୍ଡୋନେଶିଆର ବିପର୍ଯ୍ୟସ୍ତ ଅବସ୍ଥାବେଳେ ଭାରତୀୟମାନେ ମଧ୍ୟ ଖୁବ୍ ବିପନ୍ନ ହୋଇଥିଲେ ବୋଲି ସେ କହୁଥିଲେ । ସେ ନିଜେ ମଧ୍ୟ ମୃତ୍ୟୁମୁଖରୁ ଅଳ୍ପକେ ରକ୍ଷା ପାଇଯାଇଥିଲେ । ଆନ୍ତର୍ଜାତିକ ଆଇନର ଅବମାନନା କରି ଏହି ସମୟରେ ଡଚ୍ କର୍ତ୍ତୃପକ୍ଷ ଜାକର୍ତ୍ତାରେ ଥିବା ଭାରତୀୟ ଦୂତଙ୍କୁ ଗିରଫ କରି ଅନ୍ୟତ୍ର ପଠାଇଦେଇଥିଲେ, ଯେଉଁଥିପାଇଁ ପରବର୍ତ୍ତୀ ସମୟରେ ହଲାଣ୍ଡ ସରକାରଙ୍କୁ ଭାରତ-ଠାରେ କୈଫିୟତ ଦେବାକୁ ପଡ଼ିଥିଲା । ଇଣ୍ଡୋନେଶିଆରେ ହଲାଣ୍ଡ ଔପନିବେଶିକମାନଙ୍କର ଔଦ୍ଧତ୍ୟ କିପରି ଚରମ ସୀମାରେ ପହଞ୍ଚିଥିଲା, ଏଇଥିରୁ ତାହା ସହଜରେ ଅନୁମାନ କରି ହେବ ।

ସୁରବାୟାରେ ପ୍ରତିଷ୍ଠିତ ମେଡ଼ିକାଲ ଫେକାଲ୍ଟି ବୋଧ ହୁଏ ଇଣ୍ଡୋନେଶିଆର ବୃହତ୍ତମ ଚିକିତ୍ସାବିଜ୍ଞାନ ଶିକ୍ଷାକେନ୍ଦ୍ର । ତହିଁ ପରଦିନ ସକାଳେ ସେଠାକୁ ଯାଇ ବହୁ ଡାକ୍ତରୀ ଛାତ୍ରଛାତ୍ରୀଙ୍କ ସହ ଆଲୋଚନା କଲୁଁ ଏବଂ ସେମାନଙ୍କ ଅନୁଷ୍ଠାନର ବିଭିନ୍ନ ଦିଗ ବୁଲି ପରିଦର୍ଶନ କଲୁଁ ।

ଜଣେ ଛାତ୍ର ଓ ଜଣେ ଛାତ୍ରୀ—ପରସ୍ପର ଭାଇ ଭଉଣୀ—ମୋତେ ଖୁବ୍ ଜିଦ୍ କରି କଲେଜସଂଲଗ୍ନ ଏକ ରେଷ୍ଟୋରାଁକୁ ନେଇ-ଗଲେ । ଭଉଣୀଟିକୁ ପଚାରିଲି, "ଝିଅ ପିଲାମାନେ ବର୍ତ୍ତମାନ କେଉଁ କେଉଁ ବିଷୟ ପଢ଼ିବାପାଇଁ ବିଶେଷ ଆଗ୍ରହୀ ?" ସେ ଉତ୍ତର ଦେଲା, "ଶିକ୍ଷାଦାନ ବିଜ୍ଞାନ (Training for science of teaching) ଓ ଡାକ୍ତରୀ ।"

"ଏଇ ଦୁଇଟି ନିର୍ଦ୍ଦିଷ୍ଟ ବିଷୟରେ ଏତେ ଆଗ୍ରହୀ ହେବାର କାରଣ କଣ ?"

ଭଉଣୀଟି ହସି ହସି ତା ସାନ ଭାଇକୁ ଦେଖାଇ କହିଲା, "ଏଇଭଳି ବୁଦ୍ଧିମାନଙ୍କୁ ପାଠ ପଢ଼ାଇବାକୁ ହେବ ଓ ମାତୃଜାତି ହିସାବରେ ସେମାନଙ୍କ ଚିକିତ୍ସାର ତତ୍ତ୍ୱ ନେବାକୁ ହେବ । ଏ କାମ ଆମ ନାରୀମାନଙ୍କ ଛଡ଼ା ଆଉ କିଏ କରନ୍ତା ?"

ଝିଅଟିର କହିବା ଭଙ୍ଗୀରେ ମୋତେ ଭାରି ହସ ମାଡ଼ୁଥିଲା । ସାନ ଭାଇଟି ଖୁବ୍ ଗମ୍ଭୀର ହୋଇ ଆହୁରି ହାସ୍ୟୋଦ୍ଦୀପକ ଭଙ୍ଗୀ କରି କହିଲା, "ତାଙ୍କର ବିଷୟ କଣ ଜାଣିଛନ୍ତି ? କେବଳ ମୋର ବଡ଼ ଭଉଣୀ ନୁହେଁ, ଏସିଆର ସମସ୍ତ ଦେଶର ନାରୀମାନେ ଏଇ-ଭଳି inferiority complex ରେ ପୀଡ଼ିତ ହେଉଛନ୍ତି ।"

ଭାଇ-ଭଉଣୀ ଉଭୟେ ପରାମର୍ଶ କରି ମୋପାଇଁ ଯେଉଁ ଚାମଚ୍ ମଗାଇଥିଲେ, ତାହା ଦୁଧ ଭଳି ଧଳା ଏବଂ ସେଥିରେ ପୁଣି ପାଳୁଅ ଭଳି କଣସବୁ ପଡ଼ିଥାଏ । ଅବଶ୍ୟ ମିଠା, କିନ୍ତୁ ତାର ଗନ୍ଧ ମୁଁ ସହ୍ୟ କରିପାରିଲି ନାହିଁ ।

ସେଦିନ ରାତିରେ ଅଭ୍ୟର୍ଥନା ସମିତି ତରଫରୁ ସ୍ଥାନୀୟ କର୍ପୋରେସନ ହଲ୍‌ରେ ଏକ ବିରାଟ ସମ୍ବର୍ଦ୍ଧନା ସଭାରେ ପ୍ରତିନିଧି ମାନଙ୍କୁ ସ୍ୱାଗତ କରାଗଲା । ବକ୍ତୃତା, ଭୋଜି ଇତ୍ୟାଦି ଉତ୍ତାରେ ବିଭିନ୍ନ ଦେଶର ପ୍ରତିନିଧିମାନେ ନାନାପ୍ରକାର ସାଂସ୍କୃତିକ ଅନୁଷ୍ଠାନ ପ୍ରଦର୍ଶନ କଲେ ।

ଗୋଟିଏ ଶିଖିବାର କଥା, ଯେତେବେଳେ ବିଦେଶକୁ ଯେକୌଣସି ଉପଲକ୍ଷରେ ଏକ ପ୍ରତିନିଧି ଦଳ ଯାଆନ୍ତି, ସେଦଳରେ ଅନ୍ତତଃ ଜଣେ ଦୁଇ ଜଣ ଗାଇ ଜାଣିଥିବା ବା ବଜାଇ ଜାଣିଥିବା ଲୋକ ଯିବା ଉଚିତ । ସବୁ ଦେଶରୁ ସେମିତି ଆସିଥିଲେ ପ୍ରାୟ । ଅଥଚ ଭାରତବର୍ଷରୁ ! ଯେଉଁମାନେ ଯାଇଥିଲେ, ସେମାନଙ୍କ ଭିତରୁ କେତେକେ ଅନ୍ୟାନ୍ୟ କ୍ଷେତ୍ରରେ ଅବଶ୍ୟ ଖୁବ୍ ଜଣାଶୁଣା ସନ୍ଦେହ ନାହିଁ; କିନ୍ତୁ ଏଇ ଦିଗଟାରେ ଗଜଯୂଥ ( ନିଜକୁ ମିଶାଇ ଏବଂ ଅନ୍ୟମାନଙ୍କୁ କ୍ଷମା ପ୍ରାର୍ଥନା ସହ ) ! ତଥାପି ଭାରତବର୍ଷର ନାମ ଉଚ୍ଚାରଣମାତ୍ରେ ଜନସାଧାରଣଙ୍କର ସେ କି ବିପୁଳ ଉତ୍କଣ୍ଠା ! ସୁତରାଂ ମଞ୍ଚଉପରକୁ ଯାଇ କେତେବେଳେ ଭାରତୀୟ ଲୋକସଙ୍ଗୀତ, କେତେବେଳେ ଶାସ୍ତ୍ରୀୟ, ଏଇସବୁ ଉପରେ (ଏଠାରେ ମାନିଗଲେ କ୍ଷତି ନାହିଁ) ପ୍ରଚୁର ଥିଓରେଟିକାଲ୍ ଆଲୋଚନା କରି ପ୍ରାକ୍‌ଟିକାଲ୍ ଦିଗଟାକୁ ତାମଧ୍ୟରେ ଯଥାସାଧ୍ୟ ଘୋଡ଼ାଇରଖି ମୋତେଙ୍କି ଘନଘନ କରତାଳିଭିତରେ ଫେରିଆସିବାକୁ ପଡ଼ୁଥାଏ ! ମୋ ସହିତ

ପୁଣି କୋରସ୍ ଧରୁଥାନ୍ତି କେତେବେଳେ ବୃହଦାରଣ୍ୟ ବସିରୁଦ୍ଦିନ୍ ସାହେବ (ବର୍ତ୍ତମାନ ହାଇଦ୍ରାବାଦରେ ଅଧ୍ୟାପକ), କେତେବେଳେ ବା ଆଉ ଜଣେ ଏପରି ଭଦ୍ରଲୋକ, ଯେକି 'ପଣ୍ଡିତ ଓଁକାରନାଥ ଠାକୁରଙ୍କ ତବଲବାଦନ ଶୁଣି ମୁଗ୍ଧ ହୋଇଯାଇଥିଲେ ବୋଲି କହୁଥିଲେ !

ପରଦିନ ସକାଳେ ବସ୍‌ଯୋଗେ ସେଠାରୁ ଆଗ୍ନେୟଗିରି-ପରିବେଷ୍ଟିତ ଅନ୍ୟ ଏକ ସହର ମାଲଙ୍ଗ ଅଭିମୁଖରେ ଯାତ୍ରା କଲୁଁ ।

# ମାଲାଂ ଓ ବୋରୋବୁଦୁର

ବାନ୍ଦୁଂକୁ ଛାଡ଼ିଦେଲେ ଏତେ ସୁନ୍ଦର, ଶାନ୍ତ ଓ ଦର୍ଶନୀୟ ସହର ଆଉ କେଉଁଠି ନାହିଁ । ସ୍ୱାସ୍ଥ୍ୟକର ସ୍ଥାନ ହିସାବରେ ମାଲାଂ ଇଣ୍ଡୋନେଶିଆରେ ଖ୍ୟାତିସମ୍ପନ୍ନ ।

ମାଲାଂରେ ଉପସ୍ଥିତ ହୋଇ ଯାହାଙ୍କ ଘରେ ମୁଁ ଅତିଥି ହେଲି, ସେ ହେଉଛନ୍ତି ଜଣେ ସରକାରୀ ବିମାନଚାଳକ । ଛୁଟି ନେଇ ଘରକୁ ଆସିଥାନ୍ତି । ଘରେ ବୃଦ୍ଧା ମାଆ ଓ ଅନ୍ୟ ପାଞ୍ଚଟି ଭଉଣୀ । ଅସୁସ୍ଥ ପିତା ଅନ୍ୟତ୍ର ସ୍ୱାସ୍ଥ୍ୟନିକେତନରେ ଥିଲେ ।

ଅତି ଆଧୁନିକ ଫେସନରେ ପ୍ରସ୍ତୁତ ଘରର ଦ୍ୱାରଦେଶରେ ବିମାନଚାଳକ, ମିଷ୍ଟର କାଣିମୁଣ୍ଡି, ତାଙ୍କ ମାଆ ଓ ଶ୍ରେଣୀବଦ୍ଧ ଭଉଣୀ-ସମ୍ପ୍ରଦାୟ ମୋତେ ଆନନ୍ଦରେ ପାଛୋଟିନେଲେ । ସେଦିନ ମାଲାଂରେ ବିଶେଷ କିଛି ପ୍ରୋଗ୍ରାମ୍ ନ ଥାଏ । ତେଣୁ ମୋତେ ବିଶ୍ରାମ କରିବା-ପାଇଁ ଗୋଟିଏ କୋଠରୀ ଦେଖାଇଦେଇ କାଣିମୁଣ୍ଡି ଆଉ ଦୁଇ ଦିନ ଅଧିକା ଛୁଟି ଆଣିବା ଉଦ୍ଦେଶ୍ୟରେ ଫ୍ଲାୟିଂ କ୍ଲବକୁ ଗଲେ । ଉପର୍ଯ୍ୟୁପରି କେତେ ଦିନର ଭ୍ରମଣଭିତରେ ମୁଁ କ୍ଳାନ୍ତ ହୋଇ-ପଡ଼ିଥିଲି । ଲୁଗାପଟା ବଦଳ କରି ବିଛଣାରେ ଆଖି ବୁଜିବାର ଚେଷ୍ଟା କରୁଥିଲି ।

"ଭିତରକୁ ଆସିପାରୁଁ କି ?"

"ଏଥିରେ ସନ୍ଦେହ ଅଛି ? ଦୟା କରି ଆସନ୍ତୁ ।"

ମୁଁ ଅନାଇଲି । ପ୍ରଥମେ ଜଣେ ଝିଅ ପଶିଆସିଲେ । ତାପରେ ଦୁଇ ଜଣ ଦେଖିଲି, ତାପରେ ତିନିଜଣ, ଚାରି ଜଣ, ପାଞ୍ଚ, ଛଅ.........

ମୁଁ ବିଛଣାରେ ଉଠି ବସିଲି ।

ସାତ, ଆଠ, ନଅ...ଏଥର ଛୁଡ଼ା ହୋଇପଡ଼ିଲି...ଦଶ, ଏଗାର —ହଁ, ଶ୍ରୀଯୁକ୍ତ କାଶିମୁଖିଙ୍କର ଏଗାର ଜଣ ଭଉଣୀ !

"ଆପଣଙ୍କ ବିଶ୍ରାମରେ କିଛି ଅସୁବିଧା କରୁ ନାହୁଁ ତ ?"

ମୁଁ କହିଲି, "ହେଃ, କି କଥା !"

ତାପରେ ସେମାନେ ମୋତେ ଘେରିଯାଇ ପ୍ରଶ୍ନ ଆରମ୍ଭ କଲେ—"ଭାରତବର୍ଷର ଝିଅମାନେ କିମିତିକା ?"

"ଇଣ୍ଡୋନେଶିଆର ଝିଅମାନେ କିପରି ଲାଗୁଛନ୍ତି ?"

"କେଉଁ ଦେଶର ଝିଅ ବେଶୀ ଭଲ ?"

"ଆମ ଦେଶର ଝିଅମାନେ ଭଲ ନା ପୁଅମାନେ ଭଲ ?"

କିଛି ସମୟ ପରେ ମୁଁ ମୁଣ୍ଡରେ ହାତ ଦେଇ ବସିଲି । ସେମାନେ ନିଜ ନିଜଭିତରେ ପରାମର୍ଶ କରି ସିଦ୍ଧାନ୍ତ କଲେ ଯେ, ମୁଁ ଅସୁସ୍ଥ ହୋଇପଡ଼ୁଛି ।

ସମସ୍ତେ ବାହାରିଯିବା ଉତ୍ତାରୁ ମୁଁ ପୁଣି ବିଶ୍ରାମ କରିବାର ଚେଷ୍ଟା କରୁଥିଲି । ଦ୍ୱାରରେ ଶବ୍ଦ କରି, ମୁଁ କିଛି ନ କହୁଣୁ, "ସେଲାମତ୍ ପାଗି" ବୋଲି କହି ଜଣେ ପ୍ରଶାନ୍ତଦର୍ଶନ ମଧ୍ୟବୟସ୍କ ଭଦ୍ରଲୋକ ପଶିଆସିଲେ ଏବଂ ମୁଁ ବିଛଣାରୁ ଉଠିବାକୁ ଯାଉଥିବା ଅବସ୍ଥାରେ ମୋତେ ରୀତିମତ ବଳପ୍ରୟୋଗ କରି ଶୁଆଇଦେଇ ଛାତିରେ ଷ୍ଟେଥସ୍କୋପ୍ ବସାଇ ପରୀକ୍ଷା କଲେ ।

ମୋର ଯେ କଷ୍ଟ ହୋଇ ନାହିଁ, ଏକଥାଉପରେ ପ୍ରାୟ ପନ୍ଦର ମିନିଟପରେ ତାଙ୍କର କ୍ଷୀଣ ଆସ୍ଥା ଜନ୍ମିବାରୁ ସେ ସାମାନ୍ୟ କଷ୍ଟ ବଞ୍ଚିକା ରଖିଦେଇ ଚାଲିଗଲେ । ମୁଁ ଏକାଦଶୀଙ୍କ ଉଦ୍ଦେଶ୍ୟରେ ମନେ ମନେ ସମ୍ମାନ ଜଣାଇଲି ।

ଉପରାନ୍ତେ କାଶିମୁଖି ତାଙ୍କ କାର୍ ଗାଡ଼ିରେ ବସାଇ ସହର ପ୍ରଦକ୍ଷିଣ କରାଇଲେ । ରାସ୍ତାଗୁଡ଼ିକର ଉଭୟ କଡ଼ରେ ସୁସଂବଦ୍ଧ ତାଳଜାତୀୟ ବୃକ୍ଷର ଧାଡ଼ି । ଯଦିଓ ଚଳଚ୍ଚିତ୍ର ଶିଳ୍ପ ଇଣ୍ଡୋ-ନେଶିଆରେ ଯଥେଷ୍ଟ ବିକାଶପ୍ରାପ୍ତ ନୁହେଁ, ତଥାପି ଏକମାତ୍ର ମାଲାଂ ସହରରେହିଁ ଖୁବ୍ ଆଧୁନିକ ଧରଣରେ ପ୍ରସ୍ତୁତ ସିନେମାଘରର ସଂଖ୍ୟା କିଛି କମ୍ ନୁହେଁ । ଅନେକଗୁଡ଼ିଏ ଘର ପୁଣି ଶୀତ-ତାପ-ନିୟନ୍ତ୍ରିତ ବୋଲି ଶୁଣିଲି ।

ସହରବାହାରେ ଏକ ଖୋଲା ମୈଦାନର ପ୍ରାନ୍ତ ଛୁଇଁ ବହୁ ଦୂର ଯାଏ ପଥଟିଏ ଲମ୍ବିଯାଇଛି । ସେଇଥିରେ ପ୍ରାୟ ଘଣ୍ଟାଏ କାର୍ ଚଢ଼ି ପବନ ଖାଇବାଉତ୍ତାରୁ ଆମେ ବସାକୁ ପ୍ରତ୍ୟାବର୍ତ୍ତନ କଲୁଁ । ସେଦିନ ରାତିରେ କାଶିମୁଖି ତାଙ୍କର ଆଉ କେତେ ଜଣ ବନ୍ଧୁ-ବାନ୍ଧବଙ୍କୁ ମୋ ସହ ଖାଇବାପାଇଁ ନିମନ୍ତ୍ରଣ କରିଥାଆନ୍ତି । ଆମେ ଅସି ପହଞ୍ଚିବାମାତ୍ରେ ଅଟୋମେଟିକ୍ ଗ୍ରାମୋଫୋନରେ ବଲ୍ ନାଚପାଇଁ ଉଦ୍ଦିଷ୍ଟ ଯନ୍ତ୍ରସଙ୍ଗୀତ ବାଜିବାକୁ ଲାଗିଲା ଏବଂ ନାଚ ବି ସଙ୍ଗେ ସଙ୍ଗେ ଆରମ୍ଭ ହେଲା । ଏଭଳି ଏକ ବିପଦର ଆଶଙ୍କା ମୁଁ କରି ନ ଥିଲି । ମୁଁ ଯେ ପ୍ରକୃତରେ ବଲ୍ ନାଚ ନାଚିବାରେ ଅଭ୍ୟସ୍ତ ନୁହେଁ, ସେକଥା ବୁଝାଇବାପାଇଁ ଗଳଦ୍‌ଘର୍ମ ହେଲି । ପରିଶେଷରେ ଗୃହକର୍ତ୍ତ୍ରୀ ଭବଚନ୍ଦ୍ର କହିଲେ, "ସେ ବୋଧ ହୁଏ କାହା ସହିତ ନାଚି ତାଙ୍କୁ ଖୁସି କରିବେ ଏବଂ ଅନ୍ୟମାନଙ୍କୁ କପରି କ୍ଷୁଣ୍ଣ କରିବେ,

ସେଇ କଥା ଭାବୁଛନ୍ତି! ଠିକ୍ ଅଛି ! ଲଟେରୀ କରଯାଉ କମ୍ବା ଜଣକପରେ ଜଣେ ସମସ୍ତଙ୍କ ସହ ସେ ନାଚନ୍ତୁ!" କରଚ୍ଛାଳି ହେଲା ।

ସେ ଥିଲା ଏକ ସାଙ୍ଘାତିକ ମୁହୂର୍ତ୍ତ । ପରିଶେଷରେ ଭାରତୀୟ ଦର୍ଶନ ଓ ସଂସ୍କୃତିଉପରେ ଗୋଟିଏ ସାରଗର୍ଭକ ବକ୍ତୃତା ଦେଇ ସମସ୍ତଙ୍କୁ ହତାଶ କରିବାକୁ ବାଧ୍ୟ ହେଲି ଏବଂ ଦର୍ଶକଭାବରେ ବସି ନାଚ ଦେଖିଲି ।

ପରଦିନ ସକାଳେ ପ୍ରତିନିଧି ଦଳ ସେଠାରୁ କିଛି ଦୂରବର୍ତ୍ତୀ ଏକ ସ୍ଥାନକୁ ବୁଲି ବାହାରିଲେ; ମୁଁ କିନ୍ତୁ ସେମାନଙ୍କ ସହିତ ଗଲି ନାହିଁ । ମାଲ୍ଟାରେ ଜଣେ ଯୁବକବନ୍ଧୁଙ୍କୁ ନେଇ କେତେକ ସ୍ଥାନୀୟ ପରିବାରକୁ ଯାଇ ସେମାନଙ୍କ ସହ ମିଳାମିଶା କରିବାର ସୁଯୋଗ ଲାଭ କଲି । ସେଇ ଦିନ ଗୋଟିଏ ଦୁର୍ଘଟଣା ଘଟିଲା । ପ୍ରତିନିଧି-ମାନେ ଯାଇଥିବା ଦୁଇଟି ବସ୍‌ରୁ ହଠାତ୍ ଗୋଟିଏ ବାଙ୍କ ରାସ୍ତା ବୁଲିବାବେଳେ ଓଲଟିପଡ଼ିବା ହେତୁ ଅନେକେ ଅଳ୍ପବହୁତେ ଆହତ ହେଲେ । ସେଦିନର ସବୁ ପ୍ରୋଗ୍ରାମ୍ ସେଇଠାରୁ ସ୍ଥଗିତ ରହିଲା ।

ବନ୍ଧୁ ସୁକୁର୍‌ଙ୍କୁ ନେଇ ମୁଁ ଦୁଇ ତିନୋଟି ପରିବାର ବୁଲି ଦେଖିଲି । ଅଧିକାଂଶ ମଧ୍ୟବିତ୍ତ ପରିବାରରେ ଗୋଟିଏ ପିଆନୋ, ଗୋଟିଏ ଅଟୋମେଟିକ୍ ଗ୍ରାମୋଫୋନ ଏବଂ କେତେକ ସ୍ଥଳରେ କାର୍ ଗୋଟିଏ ରହିଥିବା ଖୁବ୍ ସ୍ୱାଭାବିକ କଥା । ଭିତରର ସଂସ୍କୃତିରେ ଯାହା ସଞ୍ଚିତ ଥାଉ, ବାହାରର ସଭ୍ୟତାରେ ଅତି ବିପୁଳ ୟୁରୋପୀୟ ପ୍ରଭାବ—ପୋଷାକପରିଚ୍ଛଦ, ଖିଆପିଆ, ଚାଲିଚଳନ ଓ କଥାବାର୍ତ୍ତା, ସବୁଥିରେ । ଗୋଟିଏ ରିକ୍‌ସାଓ୍ୱାଲାକୁ ପଦ

ଆପଣ କହିବେ "ତେରିମା କାଶି" (Thank you), ସେ ସଙ୍ଗେ ସଙ୍ଗେ ଜବାବ ଦେବ "କେମ୍ବାଲି" (No mention please)।

ପରଦିନ ଅପରାହ୍ଣରେ ମୋର ବହୁ ଆକାଂକ୍ଷିତ ସମୟ ଆସି ପହଞ୍ଚିଲା। ମାଲାଂଠାରୁ ପ୍ରାୟ କୋଡ଼ିଏ ମାଇଲ ଦୂରବର୍ତ୍ତୀ "ବୋରୋ-ବୁଦୁର" ଦେଖିଯିବା ମୋର ଏ ସହରକୁ ଆସିବାର ମୁଖ୍ୟ ଆକର୍ଷଣ ଥିଲା।

ମେଘମେଦୁର ଗ୍ରୀଷ୍ମାଶୀତଳ ଅପରାହ୍ଣରେ ଆମର ବସ୍ ବୋରୋବୁଦୁର ଅଭିମୁଖରେ ଚାଲିଲା। ପୃଥିବୀର ଅନ୍ୟତମ ବିଶାଳ କୀର୍ତ୍ତିକୀର୍ତ୍ତି ଏହି ମନ୍ଦିରର "ବୋରୋବୁଦୁର" ନାମ ବୋଧ ହୁଏ ବଡ଼ା ବୁଦ୍ଧ କ ଚମତ୍କାର କଥାରୁ ସୃଷ୍ଟି ହୋଇଛି।

ସୁନ୍ଦର ସୁନ୍ଦର ପଲ୍ଲୀଗାଁ, କଦଳୀ ଓ ନଡ଼ିଆବଣ ଟପି ଟପି ଆମ ଗାଡ଼ି ଯେତେବେଳେ ଯାଇ ବୋରୋବୁଦୁର ପାଖରେ ପହଞ୍ଚିଲା, ସେତେବେଳକୁ ପଶ୍ଚିମ ଦିଗନ୍ତର ପାଉଁଶିଆ ମେଘମାଳା ଉପରେ ଗୋଲାପୀ ଆଭା ଛାଇ ଗଲାଣି—ସୂର୍ଯ୍ୟାସ୍ତର ଆଉ ବିଳମ୍ବ ନାହିଁ।

ଅବିସ୍ମରଣୀୟ ଅବର୍ଣ୍ଣନୀୟ ବୋରୋବୁଦୁର। ଜୀବନରେ କୌଣସି ମନ୍ଦିରର ଦୃଶ୍ୟ ମୋତେ ଏତେ ବିମୁଗ୍ଧ କରି ନାହିଁ। ମନ୍ଦିରର ଚାରି ଦିଗରେ ମାଇଲ ମାଇଲ ଧରି ଜନମାନବହୀନ ସବୁଜ ପ୍ରାନ୍ତର। ବହୁ ଦୂର ଦିଗ୍‌ବଳୟର ଅରଣ୍ୟ-ଆଗ୍ନେୟଶୃଙ୍ଗ-ସଙ୍କୁଳ ଗିରିମାଳା ମେଘସହ ମିଶି ଅସ୍ପଷ୍ଟ ହୋଇଯାଇଛି। ଦକ୍ଷିଣରେ କେବଳ ମାଇଲ ମାଇଲ ବ୍ୟାପୀ ନାରିକେଳ ବଣ।

ବିପୁଳ ଆୟତନବିଶିଷ୍ଟ ମନ୍ଦିରଟି ପାହାଚ ପାହାଚ ହୋଇ ଊର୍ଦ୍ଧ୍ୱକୁ ଗଢ଼ା। ସମସ୍ତ ପାହାଚରେ ଥିବା ଧ୍ୟାନମଗ୍ନ ବୁଦ୍ଧମୂର୍ତ୍ତି ସଂଖ୍ୟାରେ ଅନ୍ତତଃ ପାଞ୍ଚ ଶହରୁ ଅଧିକ।

ଶତାବ୍ଦୀ ଶତାବ୍ଦୀ ଧରି ପ୍ରାଚ୍ୟର ଏଇ ଇତିହାସପ୍ରଖ୍ୟାତ ମନ୍ଦିର ଭାରତୀୟ ଭାସ୍କର୍ଯ୍ୟର ଜୀବନ୍ତ ନମୁନା ବହନ କରି ଏଇ ନିର୍ଜୀବ ଶିଳା-ଭୂଇଁରେ ଛିଡ଼ା ହୋଇଛି । ସମଗ୍ର ମନ୍ଦିରରେ କି ସୁନ୍ଦର ଶିଳ୍ପକଳାର ନିଦର୍ଶନ ! ମୂର୍ତ୍ତିସବୁର ଗଠନପ୍ରଣାଳୀ ଦେଖି ମୋର ଦୃଢ଼ ବିଶ୍ୱାସ ଜନ୍ମିଲା, ଯେଉଁ ଭାସ୍କରମାନେ କୋଣାର୍କ ଗଢ଼ିଛନ୍ତି, ଏମାନେ ନିଶ୍ଚୟ ସେମାନଙ୍କର ସମଗୋଷ୍ଠୀୟ ହେବାକୁ ବାଧ୍ୟ । ତା ନୋହିଥିଲେ ଉଭୟ ମନ୍ଦିରର ସୂକ୍ଷ୍ମାତିସୂକ୍ଷ୍ମ କାରୁକାର୍ଯ୍ୟମାନଙ୍କରେ ଏତେ ନିବିଡ଼ ସାମଞ୍ଜସ୍ୟ କିପରି ସମ୍ଭବପର ହୋଇଥାନ୍ତା ?

ମନ୍ଦିରର ନିର୍ଜନ ଶିଖରଦେଶକୁ ଲାଗିଥିବା ଶେଷ ପାହାଚ-ଉପରେ ଶୋଇରହି ବହୁ ସମୟ ପର୍ଯ୍ୟନ୍ତ ମହାଶୂନ୍ୟକୁ ଚାହିଁ-ରହିଲି । ଏତେ ପ୍ରଶାନ୍ତ ମୁହୂର୍ତ୍ତ ଆଉ କେବେ ଉପଭୋଗ କରି ନାହିଁ । ମାସ ମାସ ଧରି ବୋଇତ ବାହି, ଆବିଷ୍କାରର ଦୃପ୍ତି ଓ ସଭ୍ୟତା-ବିସ୍ତାରର ତୃଷ୍ଣା ନେଇ ଏ ଦେଶକୁ ଆସିଥିବା ପ୍ରାଚୀନ କଳିଙ୍ଗର ଶହ ଶହ ଶିଳ୍ପୀର ଆତ୍ମା ଯେପରି ଏଇ ମନ୍ଦିରଭିତରେ କଥା କହି ଉଠୁଥିଲା ।

କେତେ ସମୟପରେ ଅନ୍ୟମାନେ ଚିତ୍କାର କରି ଡାକିବାରୁ ତଳକୁ ଓହ୍ଲାଇଆସିଲି । ସେତେବେଳେ ଜଣେ ଇଣ୍ଡୋନେଶୀୟ ସଙ୍ଗୀ ଖୁବ୍ ବ୍ୟଗ୍ର ହୋଇ ମୋତେ ବୁଝାଇବାକୁ ଲାଗିଥାନ୍ତି, "ନିର୍ବାଣ, ନିର୍ବାଣ ମାନେ ବୁଝୁଛନ୍ତି ? ବୋଇଲେ ଏକପ୍ରକାର ମୁକ୍ତି :···" ଇତ୍ୟାଦି ଇତ୍ୟାଦି ।

ସେଇ ଦିନ ସନ୍ଧ୍ୟାରେ ପ୍ରତିନିଧିବର୍ଗଙ୍କ ସମ୍ମାନରେ ମାଲଙ୍ଗ ଅଭ୍ୟର୍ଥନା ସମିତି ଏକ ସୁନ୍ଦର ଲୋକନୃତ୍ୟ ଓ ଲୋକସଙ୍ଗୀତର କାର୍ଯ୍ୟକ୍ରମ ସ୍ଥାନୀୟ ବଡ଼ ଗୋଟିଏ ପ୍ରେକ୍ଷାଳୟରେ ଅନୁଷ୍ଠିତ

ହେବାର ଆୟୋଜନ କରିଥିଲେ । ଏଥିପାଇଁ ସ୍ୱତନ୍ତ୍ରଭାବରେ ନିମନ୍ତ୍ରିତ ହୋଇ ବାଲିଦ୍ୱୀପର ଏକ ନୃତ୍ୟଦଳ ମଧ୍ୟ ଆସିଥିଲେ । ହିନ୍ଦୁ ପୁରାଣକୁ ଭିତ୍ତି କରି ଗଢ଼ିଉଠିଥିବା ଲୋକଗାଥାମୂଳକ ନୃତ୍ୟ, ଇସ୍‌ଲାମ ଲୋକଗାଥାରୁ ଉଦ୍‌ଭୂତ ନୃତ୍ୟ, ଏସବୁ ବେଶ ଅତି ଚମତ୍କାରଭାବରେ ପରିବେଷିତ ହୋଇଥିଲା । ଲୋକସଙ୍ଗୀତର ସୁରଗୁଡ଼ିକ ମଧ୍ୟ ଅତି ଚମତ୍କାର—ଅବଶ୍ୟ ୟୁରୋପୀୟ ସଙ୍ଗୀତ-ଧାରାର ଯେଉଁ ପ୍ରଭାବ, ସେଥିରୁ ଏହାର ମୌଳିକତା କେତେ ଦିନ ବଞ୍ଚାଇ ରଖିହେବ, ସେଇ ପ୍ରଶ୍ନ ମୋ ମନରେ ଉଠୁଥାଏ ।

ଶେଷ ଅନୁଷ୍ଠାନରେ ଆମକୁ ମଧ୍ୟ ଅଂଶ ଗ୍ରହଣ କରିବାକୁ ପଡ଼ିଲା । ସମସ୍ତେ ମିଶି Till we meet again ଗୀତଟି ବୋଲି ସେଇ ରାତିରେ ସିଧା ସିଧା ପ୍ରେକ୍ଷାଳୟରୁ ବିଦାୟ ନେଇ ପୁଣି ସୁରବାୟା ପ୍ରତ୍ୟାବର୍ତ୍ତନ କଲୁଁ । କାଶିମୁଣ୍ଡଙ୍କର କେତେ ଜଣ ଭଉଣୀ ମଧ୍ୟ ସେଇ ସନ୍ଧ୍ୟାର କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି-ଥିଲେ । ସେମାନେ ସଭିଏଁ, ବନ୍ଧୁ ସୁକୁର୍, ତାଙ୍କ ବାନ୍ଧବୀ କୁମାରୀ ହାର୍ଦ୍ଦିନା ଏବଂ ଅନ୍ୟ ସମସ୍ତଙ୍କ ଠାରୁ ବିଦାୟ ଗ୍ରହଣ କରି ବିଭିନ୍ନ ଦେଶର ପ୍ରତିନିଧିମାନଙ୍କ ସହ ସୁରବାୟା ଲେଉଟିଆସିଲି ।

ପୂର୍ବ ଦିନର ମୋଟର ଦୁର୍ଘଟଣା କଥା ସୁରବାୟାରେ ପ୍ରଚାରିତ ହୋଇପାରିଥାଏ । ଆମେ ସେଠାରେ ଆସି ପହଞ୍ଚିବା ବେଳକୁ ରାତି ଅଧାଅଧିରୁ ଅଧିକ ହୋଇଥିଲେହେଁ ଅଭ୍ୟର୍ଥନା ସମିତିର ଦଳ୍‌ପତିର ଗୁହସ୍ୱାମୀ, ସାମ୍ବାଦିକ ଓ ପୌରସଭାର କର୍ମଚାରୀମାନଙ୍କ ଦ୍ୱାରା ଭର୍ତ୍ତି ହୋଇଯାଇଥାଏ ।

ତହିଁ ପର ଦିନ ରାତିରେ ସୁରବାୟାରେ ଥିବା ଭାରତୀୟ କନ୍‌ସଲଙ୍କ ଘରକୁ ନିମନ୍ତ୍ରିତ ହୋଇ ଯାଇ କନସଲ୍‌ଙ୍କ ସ୍ତ୍ରୀଙ୍କର

ସନ୍ଦେହ ଆଦେଶ ମାନି ପେଟପୂରା ଖାଣ୍ଟି ଭାରତୀୟ ଖାଦ୍ୟ ସମ୍ପାଦକ-ପରେ ଖାଇଲୁଁ । କନ୍‌ସଲ୍ ସେଠାରେ କିପରି ତାଙ୍କର ଜୀବନ ନିର୍ବାହ କରୁଛନ୍ତି, ସେକଥା ମୁଁ ଜାଣିବାକୁ ଚାହିଁଲି । ସେ କହିଲେ, "ଅସୁବିଧା ଯଥେଷ୍ଟ ଅଛି, ସନ୍ଦେହ ନାହିଁ । ପିଲାପିଲିଙ୍କ ପଢ଼ାପଢ଼ିଠୁଁ ଆରମ୍ଭ କରି ମାତୃଭୂମିଠୁଁ ଦୂରେଇ ରହିବା ପର୍ଯ୍ୟନ୍ତ, ଏସବୁ ଅସୁବିଧା ସହ୍ୟ କରିନେବାକୁ ପଡ଼ୁଛି । ଇଣ୍ଡୋନେଶୀୟମାନଙ୍କ ସଦୟ ବ୍ୟବହାର ଓ ଭାରତୀୟମାନଙ୍କ ପ୍ରତି ଗଭୀର ସ୍ନେହ-ପ୍ରବଣତା, ଏଇସବୁ ଏଠାରେ ଆମର ଆଶ୍ରୟ ।"

ପର ଦିନ ସକାଳେ ପୁଣି ଦୀର୍ଘ ଟ୍ରେନ୍‌ଯାତ୍ରା । ପ୍ରଥମେ ଯେଉଁ ମହାନଗରୀର ବିମାନବନ୍ଦରରେ ଏଇ ପବିତ୍ର ଦେଶର ମାଟି ସ୍ପର୍ଶ କରିଥିଲି, ଏଥର ସେଇ ରାଜଧାନୀ ଜାକର୍ତ୍ତା ଅଭିମୁଖେ ।

# ବଦାୟୁ ଇଣ୍ଡୋନେଶିଆ !

ବାନ୍ଦୁଂ ଯିବା ପୂର୍ବରୁ ଜାକର୍ତ୍ତାରେ ଦେଢ଼ଘଣ୍ଟା ମାତ୍ର ରହିଥିଲି । ଏଥର କିନ୍ତୁ ଗୋଟାଏ ଦିନ ରହିବାକୁ ପଡ଼ିଲା ।

ସହରଠୁଁ କିଛି ଦୂରରେ ଏକ ଖୋଲା ମୈଦାନକୁ ଅଟ୍ଟାଳିମୟ କରି ଜନବହୁଳ ଜାକର୍ତ୍ତା ମହାନଗରୀର ପରିସର ବଢ଼ାଇବାର ଉଦ୍ୟମ କରାଯାଉଛି । ସାମରିକ ଶିକ୍ଷାର୍ଥୀମାନଙ୍କର ଏକ ହଷ୍ଟେଲରେ ଯାଇ ଆମେ ରହିଲୁଁ । ଶିକ୍ଷାର୍ଥୀମାନେ ସେତେବେଳେ ଛୁଟିରେ ନିଜ ନିଜ ଘରକୁ ଚାଲିଯାଇଥିଲେ । ହଷ୍ଟେଲଟିର ନାମ "ଆଗ୍ରମ ସପ୍ତଧର୍ମୀ ।"

ଏଥର ଆଉ ପ୍ରୋଟୋକୋଲ୍‌ମାନଙ୍କର ଝାସ୍ଟ ଆଗୁଳା ନାହିଁ । ପ୍ରତ୍ୟହ ସକାଳେ ଉଠି ସହର-ପ୍ରଦକ୍ଷିଣପାଇଁ ମୁଁ ବାହାରି-ଯାଉଥାଏ—କେବେ କେବେ ଏକୁଟିଆ, କେବେ ବା ଅନ୍ୟ ପ୍ରତିନିଧି ବନ୍ଧୁମାନଙ୍କ ସାଙ୍ଗରେ । ଜନଗହଳ ଜାକର୍ତ୍ତାରେ ଟ୍ରାଫିକ୍ ଖୁବ୍ ଭିଡ଼ । ଟ୍ରାମ୍, ବସ୍, ମୋଟରବାଇକ୍ ଓ ପେଡ୍ସ, ଏହାହିଁ ମୁଖ୍ୟ ଯାନବାହନ । ଭଡ଼ାରେ ମିଳୁଥିବା ଟ୍ୟାକ୍ସିସବୁର 'ବଡ଼' ସୁନ୍ଦର ଚକ୍‌ଚକ୍ ପଚଳା କାଠରେ ତିଆରି । ଥରେ ଜଣେ ଡ୍ରାଇଭରକୁ ପଚାରିଲି, "କାଠରେ ତିଆରି କରିବା ତ ନିରାପଦ ନୁହେଁ, ସାମାନ୍ୟ ଏକ୍‌ସିଡ଼େଣ୍ଟରେ ଚୂନା ହୋଇଯାଇପାରେ !"

ଟ୍ୟାକ୍ସି ଡ୍ରାଇଭର ହସି ହସି ଉତ୍ତର ଦେଲା, "ଆମ ଦେଶରେ ଯେଉଁସବୁ ଏକ୍‌ସିଡ଼େଣ୍ଟ ହୁଏ, ସେସବୁକୁ ସାମାନ୍ୟ ବୋଲି

ଲୁହା ଯାଇପାରିବ ନାହିଁ । ଇସ୍ପାତତିଆରି ‘ବାଣ୍ଡ’ ମଧ୍ୟ ସେଥିରେ ଉଡିଯିବ । ସୁତରାଂ କାଠରେ କରିଥିଲେ ସୁବିଧା, ଏତିକି ଯେ, ଥରେ ଭାଙ୍ଗିଗଲେ ଆଉଥରେ ଶସ୍ତାରେ ତିଆରି କରି ଆଣି ହେବ ।”

ଜାକର୍ତ୍ତାରେ ଅବସ୍ଥାନସମୟରେ ବହୁ ବ୍ୟକ୍ତିଙ୍କ ସହ ବନ୍ଧୁତା ହୋଇଥିଲା । ସେଠାରେ ଭାରତୀୟ ବୈଷ୍ଣବୀୟ ଦୂତାବାସ ତରଫରୁ ଏକ “ଭାରତୀୟ ପାଠାଗାର” ଖୋଲା ଯାଇଛି । ମୁଁ ସେଠାକୁ ଯାଇ ଭାରତବର୍ଷର ସମ୍ବାଦପତ୍ରସବୁ ପଢୁଥାଏଁ । ଅନ୍ୟ କେତେକ ଭାରତୀୟଙ୍କ ସହ ମଧ୍ୟ ସେଇଠାରେ ପରିଚୟ ହେଲା । ଦେଖିଲି, ଇଣ୍ଡୋନେଶିଆରେ ଭାରତୀୟମାନେ ମୋଟାମୋଟି ସୁଖରେ ଅଛନ୍ତି । କିନ୍ତୁ ଗୋଟିଏ ଆଶଙ୍କା ସମସ୍ତଙ୍କଠି ମୁଁ ଲକ୍ଷ୍ୟ କରିଛି । ତାହା ହେଉଛି ଭବିଷ୍ୟତ୍ ଅନିଶ୍ଚିତତାର ଆଶଙ୍କା । ବିଗତ କେତେ ବର୍ଷର ଘଟଣାବଳି ଏବଂ ବର୍ତ୍ତମାନ ମଧ୍ୟ ଇତସ୍ତତଃ ଘଟୁଥିବା ଦୁର୍ଘଟଣାମାନ ବିଦେଶୀମାନଙ୍କୁ ଯେ ନିଶ୍ଚୟ ବିଚଳିତ କରିବ, ଏହା ଖୁବ୍ ସ୍ୱାଭାବିକ ।

ଇଣ୍ଡୋନେଶିଆ ଦ୍ୱୀପପୁଞ୍ଜର ଚତୁଃପାର୍ଶ୍ୱସ୍ଥ ସମୁଦ୍ରଭିତରେ ଓ ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ଥିବା ହଜାର ହଜାର ଆଗ୍ନେୟ-ଗିରିର ଯେପରି ପ୍ରାକୃତିକ ଉତ୍ଥାନପତନ ଓ ବିସ୍ଫୋରଣ ଆଦି ଯେକୌଣସି ମୁହୂର୍ତ୍ତରେ ହୋଇପାରେ, ଇଣ୍ଡୋନେଶିଆର ରାଜନୈତିକ ଓ ସାମାଜିକ ଅବସ୍ଥା ଠିକ୍ ତଦ୍ରୂପ ।

ଇଣ୍ଡୋନେଶିଆ ଆସିବାର ପ୍ରାୟ ଦେଢ଼ ସପ୍ତାହ ପୂର୍ବରୁ ମୁଁ ଓ ଆଉ ଚାରି ଜଣ ଭାରତୀୟ ପ୍ରତିନିଧି, ଦୁଇ ଜଣ ପୂର୍ବ-ପାକିସ୍ଥାନର ପ୍ରତିନିଧି ପୁଞ୍ଚକ ଗିରିସଙ୍କଠାରେ ଯାଇ ବାକି ସମୟଟିକ

କଟାଇଥିଲୁଁ । ବାସ୍ତବିକ ପୁଞ୍ଚକ ନ ଦେଖିଥିଲେ ଇଣ୍ଡୋନେଶିଆ-ଅଭିଜ୍ଞତା ମୋର ଅସଂପୂର୍ଣ୍ଣ ରହିଯାଇଥାନ୍ତା ।

ପୁଞ୍ଚକରେ ସକାଳେ ଉଠି କାଚର ଝରକାଗୁଡ଼ିକ ମୁକୁଳାଇ-ଦେଲେ ସଙ୍ଗେ ସଙ୍ଗେ ଭାସମାନ ମେଘ ଭିତରକୁ ପଶିଆସିବ ଓ ବହୁଣାପଟସବୁ ସନ୍ତସନ୍ତିଆ ହୋଇଯିବ । ଏଠାରେ ଦୁଇ ଜଣ ସ୍ଥାନୀୟ ଶ୍ରମିକ-ଗାଇଡ୍ ଯୋଗାଡ଼ କରି ସକାଳଠୁଁ ଦୁଇପହର-ପର୍ଯ୍ୟନ୍ତ ପାହାଡ଼ଉପରେ ବଣଜଙ୍ଗଲସବୁ ଦେଖି ଦେଖି ବୁଲିବା ମୋର କାମ ଥିଲା । ଅବଶ୍ୟ ପ୍ରଥମ ତିନି ଦିନ ମାତ୍ର;ତୃତୀୟ ଦିନରେ ସେଠାରେ ଯେଉଁସବୁ ଘଟଣା ଘଟିଗଲା, ତାହା ପ୍ରଥମ ପରିଚ୍ଛେଦରେ ଲେଖିଛି । ତାପରଠୁଁ ଆଉ ବଣଜଙ୍ଗଲ ବୁଲି ଦେଖିବାର ଦୁଃସାହସ କରି ନ ଥିଲି । ସଶସ୍ତ୍ର ଫଉଜ ଆସି ଜଙ୍ଗଲରେ ଘମାଘୋଟିଆ ତଲାସ ଚଳାଇଥିଲେ ଏବଂ ଜଙ୍ଗଲଭିତରକୁ ଯିବା-ପାଇଁ କାହାକୁ ହେଲେ ଅନୁମତି ଦେଇ ନ ଥିଲେ ।

ନିସ୍ତବ୍ଧତା ଓ ନୀରବତା ଯେ କାହାକୁ କୁହାଯାଏ, ପୁଞ୍ଚକର ଏଇ·ସ୍ଥାନ ତାର ଜୀବନ୍ତ ଅନୁଭୂତି ଦିଏ । ଚାରିପଟେ ଉଚ୍ଚ ଶୈଳ-ଶିଖରବେଷ୍ଟିତ ଏକ ସ୍ଥାନରେ ଗୋଟିଏ ଜଳାଶୟ ଥିଲା । ଜଳାଶୟଠୁଁ ସିଧାସଳଖ କାନ୍ଥଭଳି ହୋଇ ପର୍ବତ ଉପରକୁ ଉଠି-ଯାଇଛି । ଚୁପ୍‌ଚାପ୍ ଏଇଠାରେ ଦିନେ ବସିଥିଲି । ଅକସ୍ମାତ୍ ଦୁପ୍‌ଦାପ୍ ଶବ୍ଦରେ ଚମକି ଉଠିଲି, ରାଇଫଲଧାରୀ କେତେ ଜଣ ସୈନିକ ଆସି ମୋତେ ଘେରିଗଲେ । ସେମାନେ କିଛି କହିବା ପୂର୍ବରୁ ମୁଁ କହିଲି "ତେଲଗାସି, କୋନ୍‌ଫାରେନ୍ସି ମହାଶିଶ୍ୟ ଏସିଆ-ଆଫ୍ରିକା ।" ସେମାନେ ଇଙ୍ଗିତଦ୍ୱାରା ମୋତେ ବୁଝାଇ-ଦେଲେ, ଏଠାରେ ବସିବା ନିରାପଦ ନୁହେଁ ।

ସେତେବେଳେ ବିମାନଯୋଗେ କଲିକତାକୁ ସିଟ୍ ମିଳୁ ନ ଥିଲି ବୋଲି ବାଧ୍ୟ ହୋଇ ପୂର୍ବରୁ ଅପେକ୍ଷା କରିବାକୁ ପଡ଼ିଥିଲି ପରିଶେଷରେ କିଛି ସୁବିଧା ହେବାର ସମ୍ବାଦ ଆସିପିବାରୁ ଆମେ ଜାକର୍ତ୍ତା ଆସିଗଲୁଁ । କିନ୍ତୁ ହତାଶ ହେବାକୁ ପଡ଼ିଲା । ଦୁଇ ଦିନ ଅପେକ୍ଷା କରିବାପରେ ଗୋଟିଏ କ୍ୱାଣ୍ଟାସ୍ ବିମାନରେ ଗୋଟିଏମାତ୍ର ସିଟ୍ ସିଙ୍ଗାପୁରପାଏ ମିଳିବ ବୋଲି ବିମାନ କର୍ତ୍ତୃପକ୍ଷ କହିଲେ । ଏପରି ଅନିର୍ଦ୍ଦିଷ୍ଟ ଯାତ୍ରା ଆରମ୍ଭ କରିବାକୁ ଅନ୍ୟ କେହି ଇଚ୍ଛୁକ ହେଲେ ନାହିଁ ।

ବହୁ କାରଣରୁ ମୁଁ କିନ୍ତୁ ବଡ଼ ଅସ୍ଥିର ହୋଇପଡ଼ିଥିଲି । ଆଉ ଜାକର୍ତ୍ତାରେ ବସିରହିବାକୁ କୌଣସି ପ୍ରକାର ଆଗ୍ରହ ନ ଥିଲା । ଶେଷକୁ ସେଇ ଅନିଶ୍ଚିତ ସିଟ୍‌ଟି ମୁଁ ରିଜର୍ଭ କଲି ।

ଆସିବାର କେତେ ଘଣ୍ଟା ପୂର୍ବରୁ ପାସ୍‌ପୋର୍ଟ ନେଇ ଭାରତୀୟ ରାଷ୍ଟ୍ରଦୂତଙ୍କ ଅଫିସକୁ ଦଉଡ଼ିଲି । ସିଙ୍ଗାପୁରପାଇଁ ପାସ୍‌ପୋର୍ଟରେ ଏନ୍‌ଡୋର୍ସମେଣ୍ଟ ନ ନେଲେ ନ ଚଳେ; କିନ୍ତୁ ଦୁର୍ଭାଗ୍ୟବଶତଃ ଏନ୍‌ଡୋର୍ସମେଣ୍ଟ ଦେବା ଦାୟିତ୍ୱରେ ଥିବା କର୍ମଚାରୀ ଜଣକ ଅନୁପସ୍ଥିତ ଥିଲେ । ଅନ୍ୟମାନେ ମୋତେ ଆଶ୍ୱାସନା ଦେଲେ, କିଛି ଚିନ୍ତା ନାହିଁ । ଆପଣ ତ ଆଉ ସିଙ୍ଗାପୁର ଭ୍ରମଣ ଉଦ୍ଦେଶ୍ୟରେ ସେଠାକୁ ଯାଉ ନାହାନ୍ତି, ଆପଣଙ୍କ ରଣୀହଷ୍ଟ ପରବର୍ତ୍ତୀ ବିମାନରେ ସ୍ଥାନ ମିଳିବା ପର୍ଯ୍ୟନ୍ତ । ଏପରି ଅବସ୍ଥାରେ ଆପଣଙ୍କୁ ସେଠାକାର କର୍ତ୍ତୃପକ୍ଷ Transit Visa ଦେଇଦେବେ ।"

ଏଇ ଆଶ୍ୱାସନା ନେଇ ମୁଁ ସିଧା ବିମାନ-ବନ୍ଦରକୁ ଗଲି । ରିକ୍‌ସାବାଲାକୁ ଧୀରେ ଧୀରେ ରିକ୍‌ସା ଚଳାଇବାକୁ କହିଲି ।

ଏ ଦେଶରେ ଏଇ ମୋର ଶେଷ କେତୋଟି ମିନଟ । ମନ ବଡ଼ ଉଦାସ ହୋଇପଡ଼ୁଥାଏ ।

ହଠାତ୍ ପଛରୁ ଡାକ ଶୁଭିଲା, "ମନୋଜ !" ଖୁବ୍ ଜୋରରେ ଚମକପଡ଼ି ଚାହିଁଲି—ବାନ୍ଦୁଂରେ ପରିଚୟ ହୋଇଥିବା ଜଣେ ଭଦ୍ରଲୋକ । ଯାହାହେଉ, ଯିବାବେଳେ ଅନ୍ତତଃ ଜଣେ ପୂର୍ବ ପରିଚିତଙ୍କଠାରୁ ବିଦାୟ ନେଇ ଯାଇପାରୁଛି । ସେ ମୋ ସହ ବିମାନବନ୍ଦରକୁ ଆସିଲେ । ବିମାନ ଛାଡ଼ିବା ସମୟ ହେବାରୁ ତାଙ୍କଠାରୁ ବିଦାୟ ନେଇ ଯାଟିଭିତରକୁ ପଶିଲି ।

ତାଙ୍କ ନାମ ମନେ ନାହିଁ, କି ଜୀବନରେ ତାଙ୍କ ସହ ଆଉ ଦେଖା ହେବ ନାହିଁ । କିନ୍ତୁ ହସ ଆଉ ଲୁହଭରା ତାଙ୍କ ମୁହଁ ଏବେ ବି ମୋତେ ସ୍ପଷ୍ଟ ଦିଶିଯାଉଛି ।

ଶୂନ୍ୟରୁ ପ୍ରଣାମ ଜଣାଇଲି ଇଣ୍ଡୋନେଶିଆର ମାଟିକୁ । ଜାକର୍ତ୍ତା ସହର ଛୋଟରୁ ଛୋଟ ହୋଇ ଅଦୃଶ୍ୟ ହେଲା । କ୍ରମଶଃ ପଲ୍ଲୀ-ପ୍ରାନ୍ତର, ପର୍ବତ-ଅରଣ୍ୟସବୁ ଧୂମାଭ ହୋଇଆସିଲା । ତାପରେ ଶୁଭ୍ର ଶୁଭ୍ର ମେଘର ପ୍ରଲେପଭିତରେ ସବୁ ଲୁଚିଗଲା । କେବଳ ରହିଗଲା ଇଣ୍ଡୋନେଶିଆ—ତାଭିତରେ ସାମାନ୍ୟ କେତୋଟି ମୋର ପରିଚିତ ମୁହଁ—ଜାଭିଦମା, ସୁକୁର୍, ଆଫେନ୍ଦି, ନ୍ୟୁଟସୁଶାନ୍ତ, ସୁଘାପ୍ରୋ ଇତ୍ୟାଦି......

ଏବଂ ସେଇ ଛୋଟ କାହାଣୀ ଝିଅଟି, ଯିଏ ବାନ୍ଦୁଂ ଛାଡ଼ିବାବେଳେ ମୋ ପକେଟରେ ଲଜେନ୍ସ ରଖିଦେଇଥିଲା ।

# ଏକ ଆଶ୍ଚର୍ଯ୍ୟ ନୃତ୍ୟକଳା

ୟୁରୋପୀୟମାନଙ୍କ ସନ୍ଧାନରେ ବହୁ ବିଳମ୍ବରେ ଧରା ଦେଇଥିବା ବାଲି ଦ୍ୱୀପର ଆଶ୍ଚର୍ଯ୍ୟ ଉନ୍ନତ ସଭ୍ୟତା ଓ ସଂସ୍କୃତି କଥା ଭାରତୀୟମାନେ ବହୁ ଦିନରୁ ଜଣାଅଧିକେ ଜାଣନ୍ତି । ଭାରତ ଓ ଇଣ୍ଡୋନେଶିଆର ସୁଦୀର୍ଘକାଳବ୍ୟାପୀ ସମ୍ପର୍କର ମୌଳିକ ଉତ୍ସ ଅନୁସନ୍ଧାନ କରିବାକୁ ହେଲେ ରାଜନୈତିକ ଇତିହାସପ୍ରତି ଯେତିକି ଦୃଷ୍ଟିପାତ କରିବା ଦରକାର, ତା ସଙ୍ଗେ ସଙ୍ଗେ "Art cannot be made subordinate to political doctrines" ଏ ତତ୍ତ୍ୱଟିପ୍ରତି ମଧ୍ୟ ସେତିକି ସମ୍ମାନ ଦେବା ଆବଶ୍ୟକ । *

ଇଣ୍ଡୋନେଶିଆର ସ୍ଥାପତ୍ୟ ଓ ମୂର୍ତ୍ତି ଶିଳ୍ପକଳା ସମ୍ପର୍କରେ ଭାରତୀୟ ପ୍ରଭାବ ଯେତିକି ସତ୍ୟ, ସେଦେଶର ନୃତ୍ୟକଳା ସମ୍ପର୍କରେ ବି ସେତିକି ସତ୍ୟ । କିନ୍ତୁ ଶିକ୍ଷାର୍ଥୀ ଶିକ୍ଷାଦାତାର ପ୍ରତିଭାକୁ ନିଜଭିତରେ ଅଭିବୃଦ୍ଧି କରିବାର ଦୃଷ୍ଟାନ୍ତ କିଛି କମ୍

---

"ଭାରତ ଔର ଇଣ୍ଡୋନେଶିୟାକା ଭାଷାଗତ ବିଭେଦ, ଜାତିଗତ ବିଦ୍ୱେଷ, ସାମାଜିକ ବୈଷମ୍ୟ କଲାକେ ଯାଦୁମନ୍ତ୍ରସେ ପଲଭରମେ କହିଁ ଗାୟବ ହୋଗୟା । ଇସ ମୈତ୍ରୀ ଔର ସ୍ନେହକେ ଲିୟେମେ କଲାନେହି ସାର୍ବଜନୀନ ଭାଷା (Universal language) କା କାମ କିୟାଥା ।"

—ବିଶ୍ୱମୈତ୍ରୀକେ ଲିୟେ କଲାକା ଦାନ—ଉତ୍କଳ ବିଶ୍ୱବିଦ୍ୟାଳୟ ।

ନାହିଁ। ଆଜ ବାଲି ଦ୍ୱୀପର ନୃତ୍ୟକଳା ସମ୍ପର୍କରେ ଏକଥା ପ୍ରଯୁଜ୍ୟ । ବହୁ ଦିନରୁ ବିଦେଶୀ ଶାସନର ପ୍ରଭାବ ଓ ନାନା ଶାଖା-ସଂସ୍କୃତିର ଅନ୍ତଃପ୍ରଭାବ (inter-influence) ଫଳରେ ଭାରତୀୟ ନୃତ୍ୟଶିଳ୍ପର ଯେଉଁସବୁ କଳା ଅବଲୁପ୍ତ ହୋଇଗଲାଣି, ଇଣ୍ଡୋନେସିଆର ବାଲି ଦ୍ୱୀପରେ ଆଜି ବି ତାହା ସଂଜୀବିତ ରହିଛି, ଆଜି ବି ସେଠିକା ସାଧକମାନଙ୍କର ଅକ୍ଳାନ୍ତ ଅନୁଶୀଳନ ଓ ବଂଶଗତ ଚର୍ଚ୍ଚା ଭିତରେ ଉଜ୍ଜ୍ୱଳ ହୋଇ ବଞ୍ଚିରହିଛି ।

ବାଲି ଦ୍ୱୀପର ବୀର ଅଧିବାସୀମାନେ କିପରି ବହୁ କାଳ-ପର୍ଯ୍ୟନ୍ତ ନିଜ ରାଜ୍ୟକୁ ବିଦେଶୀମାନଙ୍କ କବଳରୁ ମୁକ୍ତ ରଖିଥିଲେ ଏବଂ ଏଇ ଶତାବ୍ଦୀର ପ୍ରଥମ ଦଶକରେ ହଲାଣ୍ଡର ଶାସକମାନେ କିପରି ସେମାନଙ୍କର ସମସ୍ତ ଶକ୍ତି ଏକତ୍ରିତ କରି, ମାନବତାର ସମସ୍ତ ଲକ୍ଷଣ ବିସର୍ଜନ ଦେଇ ସହସ୍ର ସହସ୍ର ନରନାରୀଙ୍କର ନିର୍ମମ ହତ୍ୟାଦ୍ୱାରା ବାଲି ଦ୍ୱୀପ ଅଧିକାର କରିଥିଲେ, ସେକଥା ଅନ୍ୟତ୍ର କହିଛି । ପ୍ରାୟ ଅର୍ଦ୍ଧ ଶତାବ୍ଦୀପର୍ଯ୍ୟନ୍ତ ବାଲି ଦ୍ୱୀପର ସ୍ୱତଃସ୍ଫୂର୍ତ୍ତ ନୃତ୍ୟପ୍ରତିଭା ଏଇ ପୈଶାଚିକ ବିଜୟଫଳରେ ଯଥେଷ୍ଟ ମ୍ରିୟମାଣ ହୋଇପଡ଼ିଥିଲା । ବାଲିର ଅଧିବାସୀମାନେ ଅଦ୍ଭୁତ ଅଭିମାନୀ । ସାମ, ଦାନ, ଦଣ୍ଡ, ଭେଦ, କୌଣସି ଉପାୟ ସେମାନଙ୍କୁ ଲକ୍ଷ୍ୟ-ଚ୍ୟୁତ କରି ପାରି ନ ଥିଲା । ତେଣୁ ବିଦେଶୀମାନଙ୍କ ଆଗରେ ନିଜର ନୃତ୍ୟ-କୌଶଳ ପ୍ରଦର୍ଶନ କରିବାକୁ ବହୁ ଦିନପର୍ଯ୍ୟନ୍ତ ସେମାନେ କୁଣ୍ଠା ବୋଧ କରିଥିଲେ ।

ପୁରପଲ୍ଲୀର ସୁପ୍ରାଚୀନ ମନ୍ଦିରସମୂହର ପ୍ରଶସ୍ତ ପ୍ରାଙ୍ଗଣରେ, ଜ୍ୟୋତ୍ସ୍ନାବିଧୌତ ସାଗରତଟରେ ସମୟ-ଅସମୟରେ ଆକସ୍ମିକ-ଭାବରେ ନୃତ୍ୟ-ଜଲ୍‌ସା ଆରମ୍ଭ କରିଦେବା ଏମାନଙ୍କର ଏକ

ଜଦ୍ । ବାଲିର ସ୍ନିଗ୍ଧସୁନ୍ଦର ପରିବେଶଭିତରେ ପ୍ରକୃତିର ବର-ସନ୍ତାନ ନୃତ୍ୟକୁଶଳୀମାନଙ୍କର ଅପୂର୍ବ ପ୍ରତିଭାର ବିକାଶ ପାଶ୍ଚାତ୍ୟ ଦର୍ଶକମାନଙ୍କ ଆଖିରେ ଚମତ୍କାରିତାର ସ୍ୱପ୍ନାଞ୍ଜନ ଲଗାଇଦେଇଥିଲା । ❊

---

❊ "It was not until late one night, in the village of Pliatan that I caught. The sweet,powerful spirit of Bali. There, in the glossy darkness beneath two arching coconut palms, a rude curtain had been hung before an earth-packed stage. An informal orchestra played lively music on flutes, cymbals and split bamboo drums. Above, as a kind of stage drop, hung the southern cross and a brilliant moon.

A gong sounded and from the stage appeared a lovely villge girl of 13, dressed in the historic costumes of the Balinese dancer. Her eyes flashed, her little hands twisted, and with strange quick steps she shuffled about the village street······the child's age old face, her mask-like beauty were centuries old, and it was incomprehensible how this child could convey so much adult passion. She was indeed a miniature Sarah Bernhardt of the village streets, the child of Bali." —*James A. Michener*

ବାନ୍ଦୁଂରେ ଦିନକର ସନ୍ଧ୍ୟାରେ ଏବଂ ପରେ ମାଲାଂରେ ଥିବା ସମୟରେ ସେଠା ଅଭ୍ୟର୍ଥନା ସମିତିକର୍ତ୍ତୃକ ଆୟୋଜିତ ଏକ ନୃତ୍ୟ-କାର୍ଯ୍ୟସୂଚୀରେ ମୁଁ ବିଶେଷଭାବରେ ସେଠାକାର ନୃତ୍ୟ ଉପଭୋଗ କରିବାର ସୁଯୋଗ ପାଇଥିଲି । ବାଲିର କେତେ ଜଣ ସୁନାମଧନ୍ୟ ନୃତ୍ୟଶିଳ୍ପୀ ବିଶିଷ୍ଟ ନିମନ୍ତ୍ରଣ ପାଇ ମାଲାଂର ଏଇ ଅନୁଷ୍ଠାନରେ ଅଂଶ ଗ୍ରହଣ କରିଥିଲେ । ମୋ ପାଖରେ ବସିଥିବା ଜଣେ ନୃତ୍ୟକଳାର ଗୁଣୀ ମୋତେ ବହୁ ସମୟ ଧରି ପ୍ରତ୍ୟେକ ନୃତ୍ୟର ବିଶେଷତ୍ୱ ସମ୍ବନ୍ଧରେ ଏବଂ ସାଧାରଣଭାବରେ ଇଣ୍ଡୋ-ନେଶିଆର ନୃତ୍ୟକଳା ସମ୍ପର୍କରେ ବୁଝାଇଦେଉଥିଲେ । ଇଣ୍ଡୋ-ନେଶିଆର ସମଗ୍ର ନୃତ୍ୟଶିଳ୍ପକୁ ଚାରି ଭାଗରେ ବିଭକ୍ତ କରାଯାଇ-ପାରେ—ଶାସ୍ତ୍ରୀୟ ନୃତ୍ୟ, ଲୋକନୃତ୍ୟ, କାହାଣୀନୃତ୍ୟ (ବ୍ୟାଲେ ନୃତ୍ୟ) ଓ ଆଧୁନିକ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଶାସ୍ତ୍ରୀୟ-ନୃତ୍ୟ ଓ ଲୋକନୃତ୍ୟର ତାରତମ୍ୟ ତାର ବିଶେଷତ୍ୱରେ—ଭାରତବର୍ଷ ଭଳି ଉତ୍ସରେ ନୁହେଁ । 'ଭାରତରେ ଶାସ୍ତ୍ରୀୟ ନୃତ୍ୟ ଓ ଲୋକନୃତ୍ୟର ସୃଷ୍ଟି-ଭିତ୍ତି ପୃଥକ୍ । ଚର୍ଚ୍ଚା ମଧ୍ୟ ସ୍ୱତନ୍ତ୍ର ଶ୍ରେଣୀର ଲୋକଙ୍କ ଭିତରେ ହୁଏ । ସେଦେଶରେ କିନ୍ତୁ ଶାସ୍ତ୍ରୀୟ ଓ ଲୋକ-ନୃତ୍ୟ, ଉଭୟର ସାଧକ ଅତି ସାଧାରଣ ଲୋକେ । ଶାସ୍ତ୍ରୀୟ ଓ ଲୋକନୃତ୍ୟର ଶୈଳୀ-ପାର୍ଥକ୍ୟ ନାହିଁ—ପାର୍ଥକ୍ୟ ଅଛି କଥା-ବସ୍ତୁରେ । ଶାସ୍ତ୍ରୀୟନୃତ୍ୟର କଥାବସ୍ତୁ ଅତି ପ୍ରାଚୀନ ଏବଂ ତାର ସଙ୍ଗୀତ ସାଧନପାଇଁ ବହୁବିଧ ଯନ୍ତ୍ରର ସମନ୍ୱୟ ଆବଶ୍ୟକ । ଏହାର ପୃଷ୍ଠଭୂମି ସଙ୍ଗୀତରେ ଭାରତୀୟ ତାଳବିଜ୍ଞାନର ମୋଟାମୋଟି ନିୟମ ବ୍ୟବହୃତ ହେଉଥିବାର ମୁଁ ଲକ୍ଷ୍ୟ କଲି । ଲୋକନୃତ୍ୟର କଥାବସ୍ତୁ ଦୈନନ୍ଦିନ ଜୀବନ ।

ଶାସ୍ତ୍ରୀୟନୃତ୍ୟ ଓ ଲୋକନୃତ୍ୟର ଦେଶ ହେଉଛି ବାଲି। ଆଧୁନିକ ଓ କାହାଣୀନୃତ୍ୟର ପ୍ରସାର ଜାଭା ଦ୍ୱୀପରେ ଅଧିକ। କାହାଣୀନୃତ୍ୟର ବିଭିନ୍ନ ଭାଗ ଅଛି। ଏକପ୍ରକାର ଛାୟାନୃତ୍ୟ, ଯାହାକୁ ୱଆୟଂ (Wayang) କୁହାଯାଏ, ତାହା ମଧ୍ୟ ଏହାର ଅନ୍ତର୍ଗତ। ଅଥଚ ଏଥିରେ ମଣିଷ ପରିବର୍ତ୍ତେ ପିତୁଳାମାନେ ନାଚନ୍ତି। ବିଷୟବସ୍ତୁ ସାଧାରଣତଃ ପ୍ରାଚୀନ ରାମାୟଣ ମହାଭାରତର କାହାଣୀ। ଆଜିର ଇସଲାମ୍-ଅଧ୍ୟୁଷିତ ଇଣ୍ଡୋନେଶିଆରେ ମଧ୍ୟ ଏସବୁ ହେଲା ଜାତୀୟ କାହାଣୀ।

କାହାଣୀନୃତ୍ୟର ଅନ୍ୟାନ୍ୟ ବିଭବଭିତରେ ବ୍ୟାଲେ ମଧ୍ୟ ଅନ୍ତର୍ଭୁକ୍ତ। କେବଳ ଆଧୁନିକ ନୃତ୍ୟକୁ ଛାଡ଼ିଦେଲେ ବାକି ତିନି-ପ୍ରକାର ନୃତ୍ୟର ଶୈଳୀ ମୌଳିକତଃ ସମାନ। ବିଷୟବସ୍ତୁକୁ ନେଇ ଶ୍ରେଣୀବିଭାଗ। ଭାରତୀୟ ଚାରିପ୍ରକାର ଶାସ୍ତ୍ରୀୟନୃତ୍ୟଭିତରୁ ଛନ୍ଦରେ ମଣିପୁରୀ ସହିତ ଏବଂ ଶାସ୍ତ୍ରୀୟନୃତ୍ୟରୂପେ ଏପର୍ଯ୍ୟନ୍ତ ମଞ୍ଜୁରି ପାଇ ନ ଥିବା ଓଡ଼ିଶୀନୃତ୍ୟର ପଦକ୍ଷେପ ସହିତ ଇଣ୍ଡୋ-ନେଶୀୟ ଶାସ୍ତ୍ରୀୟନୃତ୍ୟ ବୋଲି ମୁଁ ଯାହାର ଶ୍ରେଣୀବିଭାଗ କରୁଛି ତାହାର ସାମଞ୍ଜସ୍ୟ ଥିବାର ମୁଁ ଲକ୍ଷ୍ୟ କରୁଥିଲି। ଏଇସବୁ ନୃତ୍ୟ ବିମୁଗ୍ଧ ଚିତ୍ତରେ ଦେଖୁଥିବାବେଳେ କାହିଁକି କେଜାଣି ମୋର ବାରମ୍ବାର ମନେ ହେଉଥିଲା, ସତେ ଯେପରି ମୁଁ ସୁପ୍ରାଚୀନ ଭାରତୀୟ ନୃତ୍ୟକଳାର ଏକ ଯାଦୁଘରେ ବସି ବହୁ ଅବଲୁପ୍ତ ନୃତ୍ୟର ସ୍ୱପ୍ନ ଦେଖୁଛି। ନୃତ୍ୟତତ୍ତ୍ୱବିଶେଷଜ୍ଞ ହୋଇଥିଲେ ହୁଏତ ମୁଁ ଏହାର କାରଣ ଜାଣିପାରିଥାନ୍ତି।

କେତେକ ନୃତ୍ୟର ଗତି ଏକାନ୍ତ ମନ୍ଥର; ଅଥଚ ପ୍ରକାଶ-ଭଙ୍ଗୀର ଲାବଣ୍ୟ ଓ ସ୍ନିଗ୍ଧତା, ବାହୁଲ୍ୟବର୍ଜିତ ମୂଳୁଟଉତ୍ସାୟ-

ସଜ୍ଜିତ ରୂଶମଞ୍ଚ ପଶଛଦ ସେସବୁକୁ ଅପୂର୍ବ ଶୋଭାନ୍ୱିତ କର-ଥାଏ । ପ୍ରାଚୀନ ରୂପକଥା, ହିନ୍ଦୁ ପୁରାଣର କଥାକାହାଣୀ, ବୌଦ୍ଧ-ଜାତକର ଗଳ୍ପ, ଦୂର ଦ୍ୱୀପମାଳାର ଜନଶ୍ରୁତି—ଇଣ୍ଡୋନେଶିଆର ବିଭିନ୍ନ ନୃତ୍ୟକଳାଭିତରେ ଏସବୁର ସମନ୍ୱୟ ନାନା ବିଷୟବସ୍ତୁ ସୃଷ୍ଟି କରିଛି ।

ଶହ ଶହ ବର୍ଷର ଅନ୍ଧକାରଛନ୍ନ ସାମ୍ରାଜ୍ୟବାଦୀ ବଦ୍ଧେଦ-ଦୁର୍ଗର ଧ୍ୱଂସାବଶେଷ ଉପରେ ଆଜି ଭାରତବର୍ଷ ଓ ଇଣ୍ଡୋନେଶିଆ ଏ ଦୁଇ ଦେଶର ନୃତ୍ୟବିତ୍‌ମାନଙ୍କ ଭିତରେ ପରସ୍ପର ଆଲୋଚନା ପର୍ଯ୍ୟାଲୋଚନା ହେଲେ ଏସିଆର ନିଜସ୍ୱ ଏକ ଶକ୍ତିଶାଳୀ କଳାର ଯେ ପୁନରୁଜ୍ଜୀବନ ସମ୍ଭବପର ହେବ, ଏ କଥା ଏକାନ୍ତ ସତ୍ୟ ।


Digitized by srujan ka@gmail.com

# ପଞ୍ଚଶୀଳାର ସାଧନା-ଭୂଇଁ

ଏକ ଏକ ରାଜନୈତିକ ଯୁଗ ତାର ନିଜସ୍ୱ ବହୁ ବିଶେଷତ୍ୱ ସୃଷ୍ଟି କରେ । ନିଜପାଇଁ କେତେକ ସ୍ୱତନ୍ତ୍ର ଶବ୍ଦ ମଧ୍ୟ ଚଳାଇନିଏ । ବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ବହୁଳପ୍ରଯୁକ୍ତ "ପଞ୍ଚଶୀଳ" ଶବ୍ଦଟି ତାର ଏକ ନମୁନା ।

ପରସ୍ପର ସମ୍ମାନସୌଜନ୍ୟମୟ ଅବସ୍ଥାନ ଓ ଶାନ୍ତିପୂର୍ଣ୍ଣ ସମ୍ପର୍କ ସହଯୋଗର ଆଦର୍ଶଉପରେ ଗଠିତ ପଞ୍ଚଶୀଳାର କ୍ରମ-ବ୍ୟାପ୍ତ ପରିସର ଓ ଉତ୍ତରୋତ୍ତର ଆଦରବୃଦ୍ଧି ଏହାର ମୂଳଗତ ନୀତିର ସାର୍ଥକତା ଓ ଯୁଗୋପଯୋଗୀ ପ୍ରୟୋଗର ପ୍ରମାଣ ଦିଏ ।

ଇଣ୍ଡୋନେଶୀୟ ପୁରପଲ୍ଲୀର ସାଧାରଣ ଆବହାଉଆ ଭାରତୀୟ ପୁରପଲ୍ଲୀ ତୁଳନାରେ ଗୋଟିଏ ବିଷୟରେ ଏକାନ୍ତ ଭିନ୍ନ —ତାହା ହେଉଛି ରାଜନୀତିପ୍ରତି ସର୍ବସାଧାରଣଙ୍କର ମନୋଭାବ । ସେଦେଶରେ ଆମେରିକାର ପଲିଟିସିଆନ୍‌ଙ୍କ ସଂଖ୍ୟା ଯେ କିଛି କମ୍ ତା ମୋଟେ ନୁହେଁ; କିନ୍ତୁ ଇଣ୍ଡୋନେଶିଆର ଦୀର୍ଘକାଳବ୍ୟାପୀ ଡଚ୍-ଜାପାନ-ଇଂରେଜ ବିରୋଧୀ ସଂଗ୍ରାମଭିତରେ ପ୍ରାୟ ସେଦେଶର ଅଧିକାଂଶ ଲୋକ କୌଣସି-ନା-କୌଣସିପ୍ରକାରରେ ପ୍ରତ୍ୟକ୍ଷ ପ୍ରତିରୋଧ ସହ ସମ୍ପୃକ୍ତ ଥିଲେ । ଏଇ ପ୍ରତ୍ୟକ୍ଷ ସମ୍ପର୍କହିଁ ସେ ଦେଶର ସର୍ବସାଧାରଣଙ୍କୁ ରାଜନୀତି-ସଚେତନ କରି-ଦେଇଛି । ତେଣୁ ଏଦେଶ ଭଳି ଖବରକାଗଜରେ "ଜନ-ସାଧାରଣଙ୍କ ମତ" ବୋଲି ଲେଖିଦେଲେ ତାହା ଜନସାଧାରଣଙ୍କ

ମତ ହୋଇଗଲା ବୋଲି ଆଗ୍ରହରେ କଳ୍ପନା କରିବାର ଅବକାଶ ସେଦେଶର ନେତୃବର୍ଗଙ୍କର ନାହିଁ । ସେମାନେ ଲୋକଙ୍କ ଭିତରକୁ ଯିବାକୁ ବାଧ୍ୟ ଏବଂ ପ୍ରତ୍ୟେକ ମତିଘୋଷଣା ବିଷୟରେ ଜନସାଧାରଣଙ୍କୁ ଅବଗତ କରାଇବାକୁ ବାଧ୍ୟ । ଏକଥା ସେଠାକାର କର୍ମୀ ଓ ଯୁବକମାନଙ୍କଠାରୁ ଯେତିକି ବୁଝିଛି, ତାର ବାସ୍ତବନିଦର୍ଶନସ୍ୱରୂପ ଗାଁଗହଳି ଭିତରଦେଇ ଯିବାବେଳେ ଦେଖିଛି, ଅନ୍ୟାନ୍ୟ ମତିଘୋଷଣା ସହ ପଞ୍ଚଶୀଳାଉପରେ ମଧ୍ୟ ବହୁବିଧ ପୋଷ୍ଟର୍ ।

ତିବ୍ଦତସମ୍ବନ୍ଧ ଚୀନ-ଭାରତ ଚୁକ୍ତିର ପାଞ୍ଚଗୋଟି ଆନ୍ତର୍ଜାତିକ ମତିଘୋଷଣାକୁ ଅଭିନନ୍ଦନ କରି ୧୯୫୫ ମସିହାରେ ଭାରତ ଭ୍ରମଣ କରୁଥିବା ସମୟରେ ଇଣ୍ଡୋନେଶିଆର ତତ୍କାଳୀନ ପ୍ରଧାନ ମନ୍ତ୍ରୀ ଆଲି ଶାସ୍ତ୍ରୋମିଦ୍ ଯୋଜୋ ଏହାକୁ "ପଞ୍ଚଶୀଳା" ନାମ ଦେଇଥିଲେ । ନାମଟି କେବଳ ଇଣ୍ଡୋନେଶିଆର ଅବଦାନ ନୁହେଁ, ଏହାର ପ୍ରଥମ ଅନ୍ତର୍ଦେଶୀୟ ଘୋଷଣା ମଧ୍ୟ (ଆନ୍ତର୍ଜାତିକ ନୁହେଁ) ଇଣ୍ଡୋନେଶିଆରେ ଡକ୍ଟର ସୁକର୍ଣ୍ଣଙ୍କ ଦ୍ୱାରା ହୋଇଥିଲା ଇଣ୍ଡୋନେଶିଆ ସ୍ୱାଧୀନତା ଘୋଷଣାର କିଛି କାଳ ପୂର୍ବରୁ, ପହିଲା ଜୁନ ୧୯୪୫ ମସିହାରେ । ଦେଶର ଗଠନଶୀଳ ସମ୍ବିଧାନର ମୌଳିକ ଭିତ୍ତିକୁ ପାଞ୍ଚଟି ମତିଘୋଷଣାଭିତରେ ସେ ନିର୍ଦ୍ଦେଶ କରିଦେଇଥିଲେ । ତାହା ହେଉଛି—(୧) ଜାତୀୟତାବାଦ, (୨) ଆନ୍ତର୍ଜାତିକ ମାନବିକତା, (୩) ଜନପ୍ରତିନିଧିଦ୍ୱାରା ଗଠିତ ସରକାରକର୍ତ୍ତୃକ ସର୍ବସାଧାରଣଙ୍କ ସମ୍ମତିପୂର୍ଣ୍ଣ ଶାସନସଂସ୍ଥା, (୪) ସାମାଜିକ ସୁବିଚାର, ଏବଂ (୫) ଏକ ଈଶ୍ୱରରେ ବିଶ୍ୱାସ ।

ଏହି ପାଞ୍ଚଟି ମତ ସେତେବେଳେ ପଞ୍ଚଶୀଳା ନାମରେ ନାମିତ ହୋଇଥିଲା । ଇଣ୍ଡୋନେଶିଆର ସ୍ୱତନ୍ତ୍ର ଅବସ୍ଥାକୁ କେନ୍ଦ୍ର କରି ଅବଶ୍ୟ ଏ ମତ ନିର୍ଦ୍ଦେଶ କରାଯାଇଥିଲା । ଆଜି

ଆନ୍ତର୍ଜାତିକ କ୍ଷେତ୍ରରେ ଯେଉଁ ପଞ୍ଚଶୀଳାକୁ ସଞ୍ଜୀବିତ ରଖିବାର ଉଦ୍ୟମ ହେଉଛି, ତାହାର ମୂଳମାନ ହେଉଛି—(୧) ପରସ୍ପର ସାର୍ବଭୌମତ୍ୱ ଓ ସୀମାଗତ ଅଖଣ୍ଡତାପ୍ରତି ସମ୍ମାନ, (୨) ଅନାକ୍ରମଣ, (୩) ପରସ୍ପର ଆଭ୍ୟନ୍ତରୀଣ ବ୍ୟାପାରଉପରେ ହସ୍ତକ୍ଷେପରୁ ବିରତି, (୪) ସମାନତା ଓ ପରସ୍ପର ମଙ୍ଗଳସାଧନ, ଏବଂ (୫) ଶାନ୍ତିପୂର୍ଣ୍ଣ ସହାବସ୍ଥାନ ।

ଆନ୍ତର୍ଜାତିକ କ୍ଷେତ୍ରରେ ୧୯୫୪ ଜୁନ ୨୮ର ଭାରତ-ଚୀନ ଚୁକ୍ତି ପରେ ପରେ ଇଣ୍ଡୋନେଶିଆଙ୍କ ସର୍ବପ୍ରଥମେ ପଞ୍ଚଶୀଳାକୁ ମୂଳନୀତି ହିସାବରେ ଗ୍ରହଣ କଲା । ୧୯୫୪ ଅକ୍ଟୋବର ୧୨ ତାରିଖ ଦିନ ରୁଷ ଓ ଚୀନଭିତରେ ଏଇ ପଞ୍ଚଶୀଳାର ନୀତିପ୍ରତି ଆନୁଗତ୍ୟ ଦେଖାଇବାର ଚୁକ୍ତି ଘୋଷିତ ହେଲା । ଏହା ପରେ ପରେ ଏସିଆର ବିଭିନ୍ନ ଶାନ୍ତିକାମୀ ରାଷ୍ଟ୍ରମଧ୍ୟରେ ଏଇ ପଞ୍ଚଶୀଳାପ୍ରତି ବିପୁଳ ଆଗ୍ରହ ଦେଖାଦେଲା ଏବଂ ଏହା ଯେ କେବଳ ଇଣ୍ଡୋନେଶିଆ-ଭାରତ, ଚୀନ-ଭାରତ ବା ଏସିଆର ଦେଶ-ମାନଙ୍କ ମଧ୍ୟରେ ସୀମାବଦ୍ଧ ନ ରହି ସମଗ୍ର ବିଶ୍ୱକ୍ଷେତ୍ରରେ ନିଜର ଭୂମିକା ଗ୍ରହଣ କରିବା ଉଚିତ, ଏକଥା ସମସ୍ତେ ଅନୁଭବ କଲେ । ଏସିଆର ବିଭିନ୍ନ ଦେଶର ପ୍ରଖ୍ୟାତନାମା ମନୀଷୀମାନେ ଘୋଷଣା କଲେ ଯେ, ଏକମାତ୍ର ପଞ୍ଚଶୀଳାର ଆଦର୍ଶହିଁ ଏକ ନିରାପଦ ଅନ୍ତର୍ଜାତିକ ସମାଜଗଠନରେ ପଥ ନିର୍ଦ୍ଦେଶ କରିପାରେ । *

* "These five principles are the very elements which go to make up a peaceful international society in the true sense of the word."

—*Prof. Tozawa*, Nagoya University, Japan.

ଏହାପରେ ୧୯୫୫ ଏପ୍ରିଲର ଐତିହାସିକ ବାନ୍ଦୁଂ ସମ୍ମିଳନୀ। ଅଣତିରିଶଟି ଦେଶର ପ୍ରଧାନମନ୍ତ୍ରୀମାନଙ୍କର ଏହି ସମ୍ମିଳନୀ ପଞ୍ଚଶୀଳର ମୌଳପ୍ରତି ଏସିଆ ଓ ଆଫ୍ରିକାବାସୀଙ୍କର ଯେଉଁ ସୁଦୃଢ଼ର ମମତାର ପରିଚୟ ଦେଲା, ତାହା ପୃଥିବୀର ଇତିହାସରେ ଏକ ଅବିସ୍ମରଣୀୟ ଘଟଣା ହୋଇ ରହିବ। ଏଇ ସମ୍ମିଳନୀର ଆଲୋଚନାପର୍ଯ୍ୟାଲୋଚନା ଫଳରେ ପଞ୍ଚଶୀଳାର କଳେବରବୃଦ୍ଧି ହୋଇ ତାହା ଦଶଶୀଳାରେ ପରିଣତ ହେଲା। ଏହି ଦଶଶୀଳା ହେଉଛି—

(୧) ମଣିଷର ପ୍ରାଥମିକ ଅଧିକାରସମୂହପ୍ରତି ସମ୍ମାନ

(୨) ସବୁଦେଶର ସାର୍ବଭୌମତ୍ୱ ଓ ସୀମାଗତ ଅଖଣ୍ଡତାପ୍ରତି ସମ୍ମାନ

(୩) ସମସ୍ତ ଗୋଷ୍ଠୀ ଓ ବଡ଼ସାନନିର୍ବିଶେଷରେ ସମସ୍ତ ରାଷ୍ଟ୍ରର ସମାନତା ସ୍ୱୀକାର।

(୪) ଅନ୍ୟ ଦେଶର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପରୁ ବିରତି

(୫) ମିଳିତ ଜାତିସଂଘ ସନନ୍ଦ ଅନୁଯାୟୀ ଗୋଟିଏ ଦେଶର ଏକକଭାବରେ ବା ମିଳିତଭାବରେ ଆତ୍ମରକ୍ଷା କରିବାର ଅଧିକାରପ୍ରତି ସମ୍ମାନ।

(୬) (କ) କୌଣସି ବୃହତ୍ ଶକ୍ତିର ସ୍ୱାର୍ଥରକ୍ଷାପାଇଁ ସମବେତ ଆତ୍ମରକ୍ଷା ବ୍ୟୂହ ପ୍ରସ୍ତୁତ କରିବାରୁ ବିରତି।

(ଖ) ଅନ୍ୟ ଦେଶଉପରେ କୌଣସିପ୍ରକାର ଚାପ ପକାଇବାରୁ ବିରତି।

(୭) ଆକ୍ରମଣାତ୍ମକ କାର୍ଯ୍ୟକଳାପରୁ ବିରତି ଏବଂ କୌଣସି ଦେଶର ରାଜନୈତିକ ସ୍ୱାଧୀନତା ବା ସୀମାଗତ ଅଖଣ୍ଡତା ଲଙ୍ଘନ କରିବାଭଳି କୌଣସି କାର୍ଯ୍ୟରୁ ନିବୃତ୍ତି।

(୮) ଶାନ୍ତିପୂର୍ଣ୍ଣ ଉପାୟରେ ସମସ୍ତ ଆନ୍ତର୍ଜାତିକ ବିବାଦର ନିଷ୍ପତ୍ତି

(୯) ପରସ୍ପର ସହଯୋଗ ଓ ସ୍ୱାର୍ଥରକ୍ଷା
୧୦) ନ୍ୟାୟ ତଥା ଆନ୍ତର୍ଜାତିକ ନିୟମନୀତିପ୍ରତି ସମ୍ମାନ

ଦେଶ-ଦେଶଭିତରେ ଆକାଶ-ପାତାଳ ତାରତମ୍ୟ ସତ୍ତ୍ୱେ ଏସିଆ-ଆଫ୍ରିକା ପ୍ରଧାନମନ୍ତ୍ରୀମାନଙ୍କର ବାନ୍ଦୁଂ ସମ୍ମିଳନୀ ଯେ କେତେ ସଫଳତା ସହ ଅନୁଷ୍ଠିତ ହୋଇଥିଲା, ଦଶଶୀଳାର ଜନ୍ମହିଁ ତାର ପ୍ରମାଣ । *

ପଞ୍ଚଶୀଳା ଓ ଦଶଶୀଳାର ଅନ୍ତର୍ନିହିତ ମନ୍ତ୍ର ଆଜ ବହୁ ସମର୍ଥକଙ୍କ କଣ୍ଠରେ ପ୍ରତିଧ୍ୱନିତ । ନୂଆଦିଲ୍ଲୀଠାରେ କଲମ୍ବୋ ଶକ୍ତି-ଗୋଷ୍ଠୀ ସମ୍ମିଳନୀ ଶେଷ ହେବା ପରେ ଭାରତ, ସିଂହଳ, ବର୍ମା ଓ ଇଣ୍ଡୋନେଶିଆର ପ୍ରଧାନମନ୍ତ୍ରୀମାନଙ୍କର ୧୪।୧୧।୫୬ର ମିଳିତ ବିବୃତି ବାନ୍ଦୁଂ ସିଦ୍ଧାନ୍ତପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନପାଇଁ ପୁଣି ଥରେ ସମସ୍ତମାନଙ୍କୁ ଚେତାଇଦେଇଛି ।

---

*We were from many countries, different in culture, religion, in social and political outlook just as you are yourselves, but whatever the differences were, we were united as Asians and Africans, united in a common desire. This desire was to establish a common Asian-African identity in the world, next to what may be considered as the already established and recognised identity in the world at large. This identity found its expressions in the ten principles (Dasasila) produced by the Bandung Conference."—*Ali Sartromid Yoyo*
Supplement to "Warta Bandung" 31st May 1956

# ସିଙ୍ଗାପୁର

ଫୁଙ୍କିଦେଲେ ଉଡ଼ ଯାଉଁ ଯାଉଁ ରହିଯିବେ, ଏମିତି ଜଣେ କଳାମଚମନ କ୍ଷୀଣକାୟ ଭଦ୍ରଲୋକ ମିଷ୍ଟର ପ୍ରେହ୍ଲମ୍ ମୋତେ କହିଲେ ଯେ, ମାଳୟର ଗହନ ବନସ୍ତକୁ ମହାବଳ ଶିକାରପାଇଁ ସେ ବହୁ ବାର ଯାଇଛନ୍ତି ଏବଂ ଥରେ ନିରସ୍ତ୍ରଭାବରେ ଗୋଟିଏ ବାଘ ସହ ଲଢ଼େଇ କରି ତାର ଦାନ୍ତ ଭାଙ୍ଗିଦେଇଛନ୍ତି ।

"ବିଶ୍ୱାସ ହେଉନି ? ଆପଣ ବର୍ତ୍ତମାନ ମୋ ସହ ଫେରି-ଚାଲନ୍ତୁ । ଏପର୍ଯ୍ୟନ୍ତ ସେ ଦାନ୍ତଟି ଗୋଟିଏ କାଚ ପ୍ଲେଟ୍‌ରେ ମୋ ଘର ଟେବୁଲଉପରେ ଥୁଆହୋଇଛି । ପ୍ରତ୍ୟକ୍ଷ ପ୍ରମାଣ ସଙ୍ଗେ ସଙ୍ଗେ ପାଇଯିବେ ।"

ମୁଁ ଅବଶ୍ୟ 'ପ୍ରତ୍ୟକ୍ଷ ପ୍ରମାଣ' ପାଇବାପାଇଁ ଫେରିଯିବା-ଅପେକ୍ଷା ତାଙ୍କ ବକ୍ତବ୍ୟକୁ ସ୍ୱୀକାର କରିନେଲି । ପ୍ରେହ୍ଲମ୍ ବି ସିଙ୍ଗାପୁର ଯିବେ । ତାଙ୍କର ଫାଷ୍ଟକ୍ଲାସ ଟିକେଟ । ମୋର ଟୁରିଷ୍ଟ କ୍ଲାସ । ପାର୍ଥକ୍ୟଟା ଟଙ୍କାରେ ଛଡ଼ା ଆଉ କେଉଁଥିରେ ବିଶେଷ ଥିଲାଭଳି ଲାଗୁନ ଥିଲା । ପ୍ଲେନ୍‌କୁ ଉଠିବାବେଳେ ହଠାତ୍ ମିଷ୍ଟର ପ୍ରେହ୍ଲମ୍ ଲକ୍ଷ୍ୟ କଲେ, ତାଙ୍କର ଜଣେ ମହିଳା ବନ୍ଧୁ ଟୁରିଷ୍ଟ କ୍ଲାସରେ ସିଙ୍ଗାପୁର ଯାଉଛନ୍ତି । ସେ ସଙ୍ଗେ ସଙ୍ଗେ ତାଙ୍କର ଫାଷ୍ଟ-କ୍ଲାସ ସିଟ୍‌ରେ ମୋତେ ବସାଇଦେଇ ମୋ ସିଟ୍ ନମ୍ବରଟି ନେଇ ଟୁରିଷ୍ଟ କ୍ଲାସକୁ ଚାଲିଗଲେ । କେଜାଣି କାହିଁକି ତାଙ୍କର ଗତିପଥ ମୋତେ ହଠାତ୍ ସ୍ମରଣ କରାଇଦେଲା ଡନ୍ କୁଇକ୍‌ସୋଟ୍‌ର କାହାଣୀ ।


Digitized by srujan ka@gmail.com

ବାହାରର ଆକାଶକୁ ଅନାଇ ଅନାଇ ମୁଁ ବଡ଼ ଚିନ୍ତାମଗ୍ନ ହୋଇପଡ଼ିଥିଲି । ସିଙ୍ଗାପୁର ବ୍ରିଟିଶ ଉପନିବେଶ । ବିନା ପ୍ରବେଶ-ପତ୍ରରେ କପଟଭାବରେ ମୋତେ ବ୍ରିଟିଶ କର୍ତ୍ତୃପକ୍ଷ ଗ୍ରହଣ କରିବେ, ସେଇଟା ଥିଲା ଚିନ୍ତାର ବିଷୟ । ସୂର୍ଯ୍ୟାସ୍ତ ଆଉ ଅଳ୍ପ ସମୟ ବାକି ଥାଏ । ଅପର୍ଯ୍ୟାପ୍ତ ପୋତପ୍ଳାବିତ ସିଙ୍ଗାପୁରର ବିଖ୍ୟାତ ବନ୍ଦର ଦୂରରୁ ଦେଖାଗଲା । କ୍ରମେ ସମଗ୍ର ସିଙ୍ଗାପୁର ମହାନଗରୀ —ଏସିଆ ମହାଦେଶର ଦକ୍ଷିଣ ସୀମାନ୍ତରେ ଶେଷ ବ୍ରିଟିଶ ଉପନିବେଶ ।

କିଛି-ନା-କିଛି ବିଭ୍ରାଟ ଯେ ହେବ ମୋର ଏ ଅନୁମାନ କିଛି ଭୁଲ୍ ନ ଥିଲା । ପାସ୍‌ପୋର୍ଟଗୁଡ଼ିକ ପୂର୍ବରୁ ବିମାନ କର୍ତ୍ତୃପକ୍ଷଙ୍କୁ ହସ୍ତାନ୍ତରିତ କରିଦେଇଥିଲୁଁ । ଅବତରଣ-ପ୍ରାନ୍ତରର ଠିକ୍ ଗେଟ୍ ପାଖକୁ ଆସିଲାବେଳେ ଦେଖିଲି, ସେଇ ବିମାନରେ ଆସିଥିବା ମୋହର ବନ୍ଧୁ ଜଣେ ଇଣ୍ଡୋନେଶୀୟ ଯୁବକକୁ ବେଢ଼ିଯାଇ ତିନି ଜଣ ସରକାରୀ କର୍ମଚାରୀ ପ୍ରଶ୍ନ କରୁଛନ୍ତି, "ଆପଣଙ୍କ ନାମ ମନୋଜ ଦାସ ?"

ମୁଁ ସେମାନଙ୍କ ପାଖକୁ ଯାଇ କହିଲି, "ଆପଣ ଯେଉଁ ନାମ ପଚାରୁଛନ୍ତି, ସେ ନାମର ମାଲିକ ମୁଁ । କଣ କରିପାରେଁ କୁହନ୍ତୁ ।"

ମୋର ଆପାଦମସ୍ତକ ନିରୀକ୍ଷଣ କରି ସେମାନେ କହିଲେ, "ଆପଣଙ୍କୁ ଆମ ସହିତ ଆସିବାକୁ ପଡ଼ିବ ।"

ମୁଁ କହିଲି, "ଅନ୍ୟ ଯାତ୍ରୀମାନଙ୍କ ସହ ନ ଯାଇ ଆପଣଙ୍କ ସହ କାହିଁକି ଯିବି ?"

ସେମାନେ କିଛି ଉତ୍ତର ଦେଲେ ନାହିଁ । ଆଗରେ ଜଣେ ଭଦ୍ରଲୋକ ଚାଲିବାକୁ ଲାଗିଲେ । ପଛେ ଦୁଇ ଜଣ ମଧ୍ୟ ଚାଲିବା

ଆରମ୍ଭ କଲେ । ମୁଁ ମଝିରେ ଥିଲି ଏବଂ ସେମାନେ ଏପରି ମୋତେ ଘଷି ହୋଇ ଚାଲିବାକୁ ଲାଗିଲେ ଯେ, ମୁଁ ବଳେ ବଳେ ଚାଲି-ହୋଇଗଲି ।

ଇମିଗ୍ରେସନ୍ ଅଫିସ ପଛପଟେ ଏକ ଗ୍ରେ୍‌ଟ ଅନ୍ଧକାର କୋଠରି । ଟେବୁଲଉପରେ ଥିବା ବିଦ୍ୟୁତ୍ ଆଲୋକଉପରେ ଏପରି ଆବରଣ ଦିଆ ଯାଇଥାଏ ଯେ ଷ୍ଟାଚୁ ଭଳି ଦଣ୍ଡାୟମାନ ବ୍ୟକ୍ତିମାନଙ୍କର କେବଳ କଟିଦେଶପର୍ଯ୍ୟନ୍ତ ଦେଖି ହେଉଥାଏ । କେବଳ ଯେଉଁ ବିଶାଳାକୃତି ନିଗ୍ରୋ ସାହେବ ଜଣକ ମୋ ସମ୍ମୁଖସ୍ଥ ଚୌକିରେ ବସିଥିଲେ, ସେ ମୋତେ ଏବଂ ମୁଁ ତାଙ୍କୁ ମନ ପୂରାଇ ଦେଖିପାରୁଥିଲୁଁ । କେତୋଟି ମିନିଟ ନୀରବରେ ବିତି-ଯିବାପରେ ମୁଁ ତାଙ୍କ ଆଗରେ ସିଗାରେଟ ପ୍ୟାକେଟଟି ଖୋଲି-ଧରି କହିଲି, "ଆଜ୍ଞା, ଦୟା କରି ଧୂଆଁ ପିଅନ୍ତୁ ।"

ସେ ଗୋଟିଏ ପିସ୍ତଲ୍ ଫୁଟାଇବା ଭଳି "ଧନ୍ୟବାଦ" କହି ମୋତେ ପ୍ରଶ୍ନ କଲେ,"କହିବେ କି, ଆପଣ ଆଗାମୀ କେତେ ଘଣ୍ଟା-ଭିତରେ ସିଙ୍ଗାପୁର ଗ୍ଲାଇଡ଼ ଚାଲିଯିବେ କି ନାହିଁ ?"

ମୁଁ ବିନୀତଭାବରେ ଉତ୍ତର ଦେଲି, "କେତେ ଘଣ୍ଟାର କନ୍‌ସେସନ୍ କାହିଁକି, ଆଗାମୀ କେତେ ସେକେଣ୍ଡଭିତରେ ମୁଁ ଯଦି ସିଙ୍ଗାପୁର ଗ୍ଲାଇଡ଼ ଉଡ଼ିଯାଇପାରନ୍ତି, ତେବେ ନିଜକୁ ପୃଥିବୀରେ ଅନନ୍ୟତମ ସୌଭାଗ୍ୟବାନ୍ ବ୍ୟକ୍ତି ବୋଲି ମନେ କରନ୍ତି ।"

ବାସ୍ ! ତାପରେ ଚାଲିଲା ଟେଲିଫୋନ୍ ଏବଂ ଟେଲିଫୋନ୍ । ଭି. ଓ. ଏ. ଫି., ଏସ୍ପ୍ରାକ୍-ଫ୍ରନ୍ସ, ପାନ୍ ଆମେରିକାନ୍, ଏଆର୍-ଇଣ୍ଡିଆ ସମସ୍ତ ବିମାନ-ଅନୁଷ୍ଠାନକୁ ପ୍ରାପ୍ତ ହୁକୁମ ଦେବା ସ୍ୱରରେ

କୁହାଯାଉଥାଏ, ଆଗାମୀ କାଲି କେହି କଲିକତା, ଅନ୍ତତଃ ପକ୍ଷେ ବୋମ୍ବେଇ ପର୍ଯ୍ୟନ୍ତ ଗୋଟିଏ ସିଟ୍ ଦେଇପାରିବେ କି ନାହିଁ । କିନ୍ତୁ ସାତ ଦିନ ପୂର୍ବରୁ କେହି ସାହାଯ୍ୟ କରିପାରିବା ଭଳି ଆଶ୍ୱାସନା ଦେଇପାରିଲେ ନାହିଁ । ଅଫିସରଙ୍କ ମୁହଁ କ୍ରମଶଃ ଗାଢ଼ ଲାଲ ହୋଇ-ଆସିଲା । ଶେଷଥରପାଇଁ ସଶବ୍ଦରେ ଟେଲିଫୋନ୍ ଥୋଇଦେଇ କହିଲେ, "ଆପଣଙ୍କର ଏଠାକୁ ଆସିବାର ଉଦ୍ଦେଶ୍ୟ କଣ ଆମେ ଜାଣିପାରୁଁ କି ?"

ମୁଁ କହିଲି, "ଯେହେତୁ ସିଙ୍ଗାପୁର ସହରଟା ଜାକର୍ତ୍ତାଠୁଁ କଲିକତା ମଝିରେ ପଡ଼ୁଛି, ଆନ୍ତର୍ଜାତିକ ବିମାନ ଚଳାଚଳର ନିମିତ୍ତ ବ୍ୟବସ୍ଥା, ସେଥିରେ ନ ହେଲାଇ ଅନ୍ୟ କିଛି ଉପାୟ ନ ଥିଲା । ଆଶା କରେଁ ଏସବୁ ସୁବିଧା-ଅସୁବିଧା କଥା ଆପଣ ବେଶୀ ଜାଣନ୍ତି ।"

"ଠିକ୍ ଅଛି । ଯେପର୍ଯ୍ୟନ୍ତ ଆପଣ ଏଠାରୁ ବିଦାୟ ନ ନେଇଛନ୍ତି, ସେପର୍ଯ୍ୟନ୍ତ ଆପଣଙ୍କୁ ଗୋଟିଏ ହୋଟେଲରେ ରହିବାକୁ ପଡ଼ିବ ।"

"ଆପତ୍ତି ନାହିଁ ।"

"ଏବଂ ସେଥିପାଇଁ ଆପଣଙ୍କୁ ଟଙ୍କା ଦେବାକୁ ପଡ଼ିବ ।"

"ଅବଶ୍ୟ" କହି ମୁଁ ପକେଟରୁ ପାଞ୍ଚଟଙ୍କିଆ ନୋଟ ଖଣ୍ଡିଏ କାଢ଼ି ତାଙ୍କ ଆଡ଼କୁ ବଢ଼ାଇଦେଲି । ସେ ଚିତ୍କାର କରିଉଠିଲେ, "ଏହାର ଅର୍ଥ କଣ ? ଏଥିରେ କେବଳ କପ୍ କଫି ମାତ୍ର ମିଳିପାରିବ !"

"ମୋ ପାଖରେ ତ ଆଉ ନାହିଁ ।"

"ଆପଣ ତାହାହେଲେ ସିଙ୍ଗାପୁରରେ କିପରି ଚଳିବେ ବୋଲି ଭାବିଥିଲେ ?"

"ଆପଣଙ୍କ ଏଠାରୁ ବାଦ୍ଧ୍ୟ ସମ୍ମିଳନୀକୁ ଯାଇଥିବା ଗ୍ରୁପ-ପ୍ରତିନିଧିମାନଙ୍କ ଭିତରୁ ମୋତେ ପ୍ରାୟ ପ୍ରତ୍ୟେକେ ଅନୁରୋଧ କରି ଆସିଥିଲେ, ସିଙ୍ଗାପୁର ଆସିଲେ ସେମାନଙ୍କ ଅତିଥି ହେବାପାଇଁ ।"

ଟେବୁଲଟି ଗୁଣ୍ଡ ଫାଳ ହୋଇଯାଇଥିଲେ ଆଶ୍ଚର୍ଯ୍ୟ ହେବାର କିଛି ନ ଥିଲା । ଏକ ପ୍ରଚଣ୍ଡ ମୁଠା ଟେବୁଲରେ ଥୋଇ ସେ ଚିତ୍କାରରେ ଫାଟିପଡ଼ିଲେ, "ବାଃ, ବାଃ, ଅପଣ ଏଠାକାର ଗ୍ରୁପ-ମାନଙ୍କ ସହ ମିଶିବାର ଯୋଜନା କରି ଆସିଛନ୍ତି ! ମୁଁ ଜାଣେ ଆପଣଙ୍କ ଆସିବାର ମତଲବଟା କଣ । ଆମ ଡିପାର୍ଟମେଣ୍ଟ ସବୁ ଖବର ରଖିଛି । ଜାଣନ୍ତି ଆପଣଙ୍କୁ ନେଇ ମୁଁ ବର୍ତ୍ତମାନ କଣ କରି ପାରେ—ଜାଣନ୍ତି ? ମୁଁ···ମୁଁ···"

"ମୁଁ ଜାଣେ, ଆପଣ ଜେଲଖାନାରେ ଭର୍ତ୍ତି କରିପାରନ୍ତି, ଅନେକ କିଛି କରିପାରନ୍ତି । ଦୟା କରି ଏସବୁ ଧମକଚମକ ବନ୍ଦ କରି ଯାହା କରିବାର କଥା କରନ୍ତୁ ଓ ଆପଣଙ୍କ କୃତିତ୍ୱ କଥା ମୋ ଦେଶର ସରକାରଙ୍କୁ ଜଣାଇଦିଅନ୍ତୁ; କାରଣ ମୁଁ ସେମାନଙ୍କର ନ୍ୟାୟସଙ୍ଗତ ପାସପୋର୍ଟ ଧରି ଆସିଛି । ଏପରି ଅବସ୍ଥାରେ ପ୍ରତ୍ୟେକ ଯାତ୍ରୀଙ୍କୁ Transit Visa ଦିଆଯାଇଥାଏ । ଏଇଟା ଆଇନର କଥା । ଯେଉଁ ଅବସ୍ଥାପାଇଁ ମୁଁ ଦାୟୀ ନୁହେଁ, ତାଉପରେ ଆଉ ବେଶୀଗୁଡ଼ାଏ ଯୁକ୍ତି କରିବାକୁ ମୁଁ ପ୍ରସ୍ତୁତ ନୁହେଁ ।"

ଏହାପରେ ବହୁ କୌତୂହଳଜନକ ଘଟଣା ଘଟିଥିଲା । ସେସବୁର ବିବରଣୀ ଲେଖି ଧୈର୍ଯ୍ୟଚ୍ୟୁତି ଘଟାଇବାକୁ ମୁଁ ଯାଉ ନାହିଁ । ମୋଟ ଉପରେ Transit Visa ମୁଁ ପାଇଥିଲି ଏବଂ ଅବଶେଷରେ ସର୍ଦ୍ଦାର ଅଜିତ୍ ସିଂ ନାମକ ଜଣେ ଭାରତୀୟ ଶିଖ

ବ୍ୟବସାୟୀଙ୍କ ବାସଭବନରେ ଆସିବା ପର୍ଯ୍ୟନ୍ତ ରହିଥିଲି । ସର୍ଦ୍ଦାରଜୀ ଏବଂ ତାଙ୍କ ସ୍ତ୍ରୀଙ୍କ ଆଦର ଆପ୍ୟାୟନ କଥା ଚିରଦିନ ସ୍ମରଣରେ ରହିବ । ତାଙ୍କର ଜିପ୍ ଗାଡ଼ିଟି ସାହାଯ୍ୟରେ ସେ ସମଗ୍ର ସିଙ୍ଗାପୁର ସହର ଠିକଣାଣି କରି ଦେଖାଇଥିଲେ । ଦୁଇ ଦିନ ପରେ ସିଙ୍ଗାପୁରରେ ଆଉ ଦୁଇ ଜଣ ପ୍ରତିନିଧି ନରସିଂହ ଗିରି ଓ ବସିରୁଦ୍ଦିନ୍ ଆସି ପହଞ୍ଚିଥିଲେ । ସେମାନଙ୍କୁ ମଧ୍ୟ ମୋ ଭଳି ଅସୁବିଧାରେ ପଡ଼ିବାକୁ ହୋଇଥିଲା । ତେବେ ବିଶେଷ ଅସୁବିଧାରେ ପଡିବା ପୂର୍ବରୁ ମୁଁ ସର୍ଦ୍ଦାରଜୀଙ୍କୁ ଧରି ତାଙ୍କ ପ୍ରଭାବପ୍ରତିପତ୍ତିରେ ସେମାନଙ୍କୁ ନେଇଆସିବାର ସୁବିଧା କରିଥିଲି । ସର୍ଦ୍ଦାରଜୀ ସିଙ୍ଗାପୁରର ପୋଲିସ ବିଭାଗର ଜଣେ କର୍ତ୍ତା ଥିଲେ । ଚାକିରି ଛାଡ଼ି ପରବର୍ତ୍ତୀ ଜୀବନରେ ବ୍ୟବସାୟ କରୁଛନ୍ତି ।

ସିଙ୍ଗାପୁର ଏକ ବହୁଜାତିସମନ୍ୱିତ ମହାନଗରୀ । ମାଲୟ-ବାସୀ ଓ ଚୀନାଙ୍କ ବ୍ୟତୀତ ସିଙ୍ଗାପୁରରେ ଭାରତୀୟ, ସିଂହଳବାସୀ ଓ ଆରବୀୟ ଲୋକେ ପ୍ରଚୁର ଅଛନ୍ତି । ସିଙ୍ଗାପୁରର ପ୍ରାଚୀନ ନାମ ସିଂହପୁର । ଆୟତନ ଦୁଇ ଶହ ସତର ବର୍ଗମାଇଲ । ପ୍ରାୟ ୧୬ ଲକ୍ଷ ଜନସଂଖ୍ୟାବିଶିଷ୍ଟ ଏହି ସହରରେ ଭାରତୀୟ ପ୍ରାୟ ଶତକଡ଼ା ଆଠ ଜଣ । ୟୁରୋପୀୟଙ୍କ ସଂଖ୍ୟା ବୋଧ ହୁଏ ଶତକଡ଼ା ଜଣକରୁ ବି କମ୍ ।

ଏସିଆର ଏହି ସୁନ୍ଦର ମହାନଗରୀଟି ଆଜକୁ ବହୁ ବର୍ଷ ଧରି ବ୍ରିଟିଶମାନଙ୍କର କରତଳଗତ ହେଲଣି । ୧୮୧୯ ଖ୍ରୀଷ୍ଟାବ୍ଦରେ ଜୋହରର ସୁଲତାନ ଇଷ୍ଟ ଇଣ୍ଡିଆ କୋମ୍ପାନୀ ସହ ଏକ ଚୁକ୍ତି-ଅନୁଯାୟୀ କୋମ୍ପାନୀ ହାତରେ ସିଙ୍ଗାପୁର ଅର୍ପଣ କରିଥିଲେ । ପାଞ୍ଚ ବର୍ଷ ପରେ ପୁଣି ଏହି ଚୁକ୍ତି କାଗଜପତ୍ର ଆକାରରେ

କୋମ୍ପାନୀକୁ ଆଜ କିଛି ଅଧିକ ସୁବିଧା ଦେଇ ପୁନଃ ସ୍ୱାକ୍ଷରିତ ହେଲା। ତାପରେ ଗତାନୁଗତିକ ସାମ୍ରାଜ୍ୟବାଦୀ ଉପାୟ ଅନୁସାରେ ସିଙ୍ଗାପୁର ସ୍ଥାୟୀ ବ୍ରିଟିଶ ଉପନିବେଶରେ ପରିଣତ ହେଲା।

ସିଙ୍ଗାପୁରରେ କିଛି ଦିନ ରହଣୀଭିତରେ ମୋର ସର୍ବଦା ମନେ ହେଉଥିଲା, ଯେପରି କିଛି ଗୋଟାଏ ବିସ୍ଫୋରକ ପଦାର୍ଥକୁ ବ୍ରିଟିଶ ସରକାର ବାଲିରେ ଢାଙ୍କି ରଖିଛି—ଯେକୌଣସି ମୁହୂର୍ତ୍ତରେ ବିସ୍ଫୋରଣ ହୋଇପାଇପାରେ ! ସମୟ-ଅସମୟରେ ବ୍ରିଟିଶ ବାହିନୀ ରାସ୍ତା ମଝିରେ ଶୋଭାଯାତ୍ରା କରି ଯାଉଥିବା ଭଳି ଆଶଙ୍କାର ଲକ୍ଷଣ ବରାବର ଅନୁଭୂତ ହେଉଥିଲା।

ବହୁ ରକ୍ତପାତ ଓ ଅବିଶ୍ରାନ୍ତ ଦମନ କରି ଶେଷରେ ବ୍ରିଟିଶ ସରକାର ମାଳୟକୁ ସ୍ୱାୟତ୍ତ ଶାସନ ଦେବା ପରେ ସମସ୍ତେ ଆଶା କରିଥିଲେ, ସିଙ୍ଗାପୁର ମଧ୍ୟ ଏଥିରୁ ବାଦ୍ ଯିବ ନାହିଁ। କିନ୍ତୁ ବ୍ରିଟିଶ ଔପନିବେଶିକ ମନ୍ତ୍ରୀ ଲେନକ୍ସ ବଏଡ୍‌ଙ୍କ ଚୁଲବାଜ ସିଙ୍ଗାପୁରକୁ ସ୍ୱତନ୍ତ୍ର କରି ରଖିଲା। ମୁଁ ସିଙ୍ଗାପୁରରେ ପହଞ୍ଚିବାର ପ୍ରାୟ ପାଞ୍ଚ ସପ୍ତାହ ପୂର୍ବରୁ ସେଠାକାର ରାଜନୈତିକ ପରିସ୍ଥିତି ଆହୁରି ସମସ୍ୟା-ବହୁଳ ହୋଇପଡ଼ିଥିଲା। ସିଙ୍ଗାପୁରର ପ୍ରଧାନ ମନ୍ତ୍ରୀ ଡେଭିଡ୍ ମାର୍ଶାଲ ବ୍ରିଟିଶ କର୍ତ୍ତୃପକ୍ଷ ସହ ସିଙ୍ଗାପୁରର ସ୍ୱାଧିକାରପ୍ରାପ୍ତି-ସମ୍ବନ୍ଧୀୟ କଥାବାର୍ତ୍ତାରେ ବିଫଳମନୋରଥ ହୋଇ ପ୍ରଧାନମନ୍ତ୍ରିତ୍ୱ ପରିତ୍ୟାଗ କରିଥିଲେ।

ଅଷ୍ଟ୍ରେଲିଆ, ଜାପାନ, ଚୀନ ଓ ଦକ୍ଷିଣ-ପୂର୍ବ ଏସିଆର ଏପରି ଏକ ସ୍ଥାନରେ ସିଙ୍ଗାପୁର ଅବସ୍ଥିତ ଯେ, ଏହାର ଭୌଗୋଳିକ ଗୁରୁତ୍ୱ ଉପଲବ୍ଧି କରି ଏହାକୁ ହାତଛଡ଼ା

କରିବାକୁ ସାମ୍ରାଜ୍ୟବାଦ ଚାହେଁ ନାହିଁ । ପ୍ରବଳ କୌଶଳ୍ୟ-ସମ୍ପନ୍ନ ବ୍ରିଟିଶ ସରକାର ଆଜି ବହୁ ଘାଟୀ ହରାଇବସିଲେଣି । ଶେଷ ରକ୍ଷାଭିତରେ ସିଙ୍ଗାପୁର ଅନ୍ୟତମ । ତେଣୁ ବ୍ରିଟିଶ ବାହିନୀ ସର୍ବଦା ସେଠାରେ ସନ୍ତ୍ରସ୍ତ ରହିଛନ୍ତି ଯେକୌଣସି ମୁହୂର୍ତ୍ତରେ ବିଦ୍ରୋହର ସମ୍ମୁଖୀନ ହେବାପାଇଁ ।

ସାମାଜିକଭାବରେ ସର୍ବଦା ସିଙ୍ଗାପୁରର ଆବହାଓଆ ଆତଙ୍କ-ଜନକ । ଯେଉଁ ଦିନ ମୁଁ ଯାଇ ପହଞ୍ଚିଲି, ସେଦିନ ସହରରେ ଏକ ଶୃଙ୍ଖଳାର ହରଣଗୃହ ହୋଇଯାଇଥାଏ । ସାନ୍ଧ୍ୟ ପତ୍ରିକାମାନଙ୍କରେ ସେବିଷୟରେ ଘମାଘୋଟ ଆଲୋଚନା । ଶୁଣିଲି, ଏପରି ହରଣଗୃହ ସେଠାରେ ଏକ ଦୈନନ୍ଦିନ ବ୍ୟାପାର । ସମ୍ପ୍ରତି ଉପଦ୍ରବ ଆରମ୍ଭ କରିଥିବା ଏକ ଅଜ୍ଞାତନାମା ଡକାଏତ ଦଳ ବଡ଼ ବଡ଼ ବ୍ୟବସାୟୀଙ୍କୁ ଧରିନେଇଯାଇ କୌଣସି ଜଙ୍ଗଲ ବା ଗୁମ୍ଫାଭିତରେ ରଖନ୍ତି ଏବଂ ତାଙ୍କ ଆତ୍ମୀୟମାନଙ୍କ ପାଖକୁ ଚିଠି ଲେଖନ୍ତି ବା ନିଜେ ପହଞ୍ଚିଯାଇ କହନ୍ତି, ଏତେ ଲକ୍ଷ ଡଲାର ଦେଲେ ସେମାନେ ଅପହୃତ ବ୍ୟକ୍ତିଙ୍କୁ ଫେରାଇଦେବେ । ଡଲାର ନ ପାଇଲେ ବି ଅବଶ୍ୟ ଫେରାଇଦେବେ, ତେବେ ଜୀବନ୍ତଭାବରେ ନୁହେଁ—ମୃତ ଭାବରେ ।

ଏଇଭଳି ରାଜନୈତିକ ଅବ୍ୟବସ୍ଥିତ ଓ ସାମାଜିକ ବିଶୃଙ୍ଖଳା-ଭିତରେ ସିଙ୍ଗାପୁର ଏକ ଏକାନ୍ତ-ଯାନ୍ତ୍ରିକ ସହର ହୋଇଉଠିଛି । ସାଂସ୍କୃତିକ ଜୀବନ ବୋଲି ବିଶେଷ କିଛି ନାହିଁ । ଗୋଟିଏ "ଥିଏଟର" ସେଠାରେ ନାହିଁ—କେବଳ ଜୀଇମ୍ ଛବି ପରିପୂର୍ଣ୍ଣ କେତୋଟି ସିନେମା ଘର, ନାଇଟ୍‌କ୍ଲବ୍, ଡେନ୍‌ସିଂ ବାର୍ ଇତ୍ୟାଦି

ସର୍ଦ୍ଦାର ଅଜିତ୍ ସିଂ ମୋତେ ନେଇ ଚାଲିଲେ ସମୁଦ୍ର-ଉପକୂଳକୁ । ପୃଥିବୀର ବହୁ ଜାତି ସେମାନଙ୍କ ଲେଖାରେ ମାଳୟ

ସମୁଦ୍ର କଥା ବଡ଼ ରୋମାଣ୍ଟିକ୍‌ଭାବରେ ଉଲ୍ଲେଖ କରିଛନ୍ତି । ମୋତେ ତ ସମୁଦ୍ରର ଜଳ ଟିକିଏ ବେଶୀ ନୀଳ ଦେଖାଗଲା । ବନ୍ଦର ପାଖ-ଦେଇ ଆମେ ଚାଲିଥାଉଁ । ଏଠାରେ ସମୁଦ୍ର ବହୁ ହାଙ୍ଗର ଓ ଅନ୍ୟାନ୍ୟ ଭୟାବହ ସାମୁଦ୍ରିକଜୀବ-କଣ୍ଟକିତ । ବନ୍ଦରରେ ବହୁ ଜାହାଜ—ଅଧିକାଂଶ ଜାପାନୀ ଓ ଆମେରିକାନ୍ । ବନ୍ଦର ଦେଖି-ସାରି ଆମେ ଗୋଟିଏ ନିରୋଳା ପଥରେ ଚାଲିଥାଉଁ । ଆଉ ଜଣେ ଶିଖ ଭଦ୍ରଲୋକଙ୍କ ସହ ଦେଖା ହେଲା । ସେ ସର୍ଦ୍ଦାରଜୀଙ୍କୁ ନମସ୍କାର କରି ସମ୍ବାଦ ଦେଲେ—ଜଣେ ଶିଖ ଯୁବକ ଗତକାଲି ରାତିରେ ମାତାଲ ହୋଇ ରାସ୍ତାରେ ଲେଟିଥିବା ଅବସ୍ଥାରେ ଧରାପଡ଼ି ହାଜତରେ ଅଛି ଏବଂ ବର୍ତ୍ତମାନ ତାର ବିଚାର ହେବ ।

ସର୍ଦ୍ଦାରଜୀ ମୋତେ କହିଲେ, "ଆପଣ ତ ଆଇନ ବିଷୟ ପଢ଼ିଛନ୍ତି; ତେଣୁ ଏଠାକାର ବିଚାରାଳୟ ଦେଖି ଯାନ୍ତୁ ।"

ବିଚାରାଳୟକୁ ଯିବାବେଳେ ରାସ୍ତାମଧ୍ୟରେ ଗୋଟିଏ ସ୍ଥାନ ନିର୍ଦ୍ଦେଶ କରି ସେ କହିଲେ, "ଏହିଠାରେହିଁ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କର ଆଜାଦ୍ ହିନ୍ଦ୍ ଫୌଜ ସଗଠିତ ହେଉଥିଲା । ଏସମସ୍ତ ଅଞ୍ଚଳ ବୋମାବିଧ୍ୱସ୍ତ ହୋଇଯାଇଥିଲା । ଆଜି ଅବଶ୍ୟ ସେଇ ପ୍ରଳୟକାଳର କୌଣସି ଧ୍ୱଂସାବଶେଷ ଅବଶିଷ୍ଟ ନାହିଁ ।"

ସହରଭିତରେ ସ୍ଥାନେ ସ୍ଥାନେ ନିହାତି ଗରିବ ଲୋକଙ୍କର ବାସସ୍ଥାନ । ଅନ୍ଧକାରମୟ, ଅପରିଚ୍ଛନ୍ନ, ଜୀବାଣୁ-ସଙ୍କୁଳିତ ଏସବୁ ସ୍ଥାନରେ ରାସ୍ତାର ଫେରିବାଲା, ରିକ୍‌ସାବାଲା, ଦିନମଜୁରି ଏଇମାନେ ରହନ୍ତି । ଏମାନଙ୍କ ବସ୍ତିକଡ଼ଦେଇ ଗୋଟିଏ ଗ୍ରେଟ୍ ନିଉ ସିଙ୍ଗାପୁରଭିତରେ ବହିଯାଇଛି ।

କୋର୍ଟ ଅଞ୍ଚଳକୁ ଯାଇ ସର୍ଦ୍ଦାରଜୀ ପ୍ରଥମେ ସେଇ ଯୁବକଟି-ଉପରେ ହୋଇଥିବା ଜୋରିମାନାଟିକ ନିଜ ପକେଟରୁ ଦେଇ ତାକୁ ଖଲାସ କରି ଆଣିଲେ । ଖଲାସ ହେବା ସଙ୍ଗେ ସଙ୍ଗେ ସେ ଏକ ଗଭୀର ଅନୁଶୋଚନାସୂଚକ ଦୃଷ୍ଟିରେ ଆମକୁ ଦେଖିନେଇ ଦଉଡ଼ ଦଉଡ଼ ଚାଲିଗଲା ।

ସର୍ଦ୍ଦାରଜୀ କହିଲେ, "ଇମିତି କେତେ ହତଭାଗ୍ୟ ଭାରତବର୍ଷ ତ୍ୟାଗ କରି ସିଙ୍ଗାପୁର ପଳାଇଆସନ୍ତି ଟଙ୍କାପଇସା ଉପାର୍ଜନ ଆଶାରେ । ଯେତେ ସୁବିଧାରେ ତାହା ହୋଇପାରିବ ବୋଲି ସେମାନେ ଆଶା ବାନ୍ଧିଥାଆନ୍ତି, ସେ ଆଶା ଯେତେବେଳେ ଧୂଳିସାତ୍ ହୋଇଯାଏ, ସେତେବେଳେ ବହୁ ଦୂରର ଘରଚିନ୍ତା, ନିଜର ଅକ୍ଷମତା, ଏସବୁକୁ ଧିକ୍କାର କରି ମନ ଟିକିଏ ଖୁସି କରିବାପାଇଁ ମଦ ଆରମ୍ଭ କରନ୍ତି । ପୂର୍ବରୁ ଇମିତି ଅବସ୍ଥାରେ ପଡ଼ି କାଳକ୍ରମେ କୁସଙ୍ଗ ପାଲଟିଯାଇଥିବା ଲୋକଙ୍କ ସଂଖ୍ୟା ଏଠାରେ କମ୍ ନୁହେଁ । ସୁତରାଂ ନବାଗତ ମଧ୍ୟ ସେମାନଙ୍କ ସହଯୋଗରେ ଧୀରେ ଧୀରେ ଆହୁରି ତଳକୁ ଖସିଯାଏ, ତହିଁରୁ ରକ୍ଷା ପାଇ ମାତୃଭୂମିକୁ ଫେରି-ଯିବା ପ୍ରାୟତଃ ସମ୍ଭବ ହୁଏ ନା ।"

ସବୁଗୁଡ଼ିକ ବକ୍ସର-କୋଠରୀ ଶୀତ-ତାପ-ନିୟନ୍ତ୍ରିତ । ବକ୍ସରପତିଙ୍କ ମୁଣ୍ଡଉପରେ ରାଣୀ ଏଲିଜାବେଥ୍‌ଙ୍କର ଗୋଟିଏ ଛବି । ପ୍ରତ୍ୟେକ କୋଠରୀରେ ଦର୍ଶକମାନଙ୍କ ବସିବା ନିମନ୍ତେ ବହୁସଂଖ୍ୟକ ବେଞ୍ଚ ଓ ଚେୟାର ନିର୍ଦ୍ଦିଷ୍ଟ ।

କିଛି ସମୟ ବୁଲାବୁଲି କରି ଆମେ ଲେଉଟି ଆସିଲୁଁ । ସହରର ପ୍ରାୟ ମଝାମଝି ଅଞ୍ଚଳରେ ଏକ ପ୍ରଶସ୍ତ ଛକଉପରେ 'ସିଙ୍ଗାପୁରର ପ୍ରଥମ ବ୍ରିଟିଶ ଗଭର୍ଣ୍ଣରଙ୍କ ନାମରେ ନିର୍ମିତ ଏକ

ମନୁମେଣ୍ଟ । ତାର ଅଦୂରରେ କଳାକଟା ଭଳି ଏକ ଭିକ୍ଟୋରିଆ ମେମୋରିଆଲ ହଲ୍ । ବିଧାନସଭା, ଗଭର୍ଣ୍ଣରଙ୍କ ଘର, ଉଚ୍ଚ ବିଶ୍ୱବିଦ୍ୟାଳୟ,ଏସମସ୍ତ ବୁଲିବୁଲି କରି ସେଦିନ ଆମେ ଲେଉଟି ଆସିଲୁଁ, ପ୍ରଥମ ଦୁଇ ଦିନ ମୁଁ ଲକ୍ଷ୍ୟ କରି ପାରି ନ ଥିଲି—ମୋର ଅନ୍ୟ ଦୁଇ ଜଣ ବନ୍ଧୁ ଆସିଯିବା ପରଠୁଁ ଲକ୍ଷ୍ୟ କଲୁଁ ଯେ, ସର୍ବଦା ଏକ ଏଣ୍ଟାଏଲ୍ ଲଗା ମୋଟର୍ କାର୍ ଆମକୁ ଅନୁସରଣ କରି ଚାଲିଛି । ସର୍ଦ୍ଦାରଜୀଙ୍କ ଘର ଠିକ ଏ ନିରୋଳା ସ୍ଥାନରେ । ଅଦୂରର ଏକ ଚାହାଦୋକାନ ଆଗରେ ସେଇ କାର୍ଟି ସମଗ୍ର ରାତି ରହେ । ସକାଳୁଁ ଆମେ ବାହାରିଲେ ପଛେ ପଛେ ଏକାନ୍ତ ଆଜ୍ଞାବହ ଭଳି ଚାଲିବାକୁ ଆରମ୍ଭ କରେ ।

ସିଙ୍ଗାପୁରର ନିଜସ୍ୱ କଳକାରଖାନା ବିଶେଷ କିଛି ନାହିଁ । ଶିଳ୍ପବିକାଶ ଏଠାରେ ହେବା ବି ସମ୍ଭବପର ନୁହେଁ । ଆମଦାନୀ-ଦ୍ରବ୍ୟର ପ୍ରାଚୁର୍ଯ୍ୟ ଏତେ ବେଶୀ ଯେ, କୌଣସି ଶିଳ୍ପପ୍ରତିଷ୍ଠାନ ପ୍ରାଥମିକ ପ୍ରତିଯୋଗିତାର ସ୍ତରରୁ ଉତ୍ତୀର୍ଣ୍ଣ ହୋଇପାରିବ ନାହିଁ । ଆଜି ବ୍ରିଟିଶ ଜନିଷପତ୍ର ବି ବିଶେଷ କିଛି ନାହିଁ, ଯେତେ ଅଛି ଆମେରିକାନ୍ ଦ୍ରବ୍ୟଗୁଡ଼ି । ବ୍ରିଟିଶ ଉପନିବେଶର ବିନାନୁମତିରେ ସିଙ୍ଗାପୁର ବନ୍ଦରକୁ ବ୍ୟବହାର କରିବାର ଅଧିକାର ଏକମାତ୍ର ଆମେରିକାନ୍ ଜାହାଜମାନଙ୍କର ଅଛି । ପୃଥିବୀର ଆଉ କୌଣସି ଦେଶପାଇଁ ଏ ସୁବିଧା ନାହିଁ ।

ଭାରତବର୍ଷର ବଜାର ତୁଳନାରେ ଏଠାରେ ଲୁଗାପଟା ଓ ବ୍ୟବହାର୍ଯ୍ୟ ଅନ୍ୟାନ୍ୟ କେତେକ ସାମଗ୍ରୀ ଯଥେଷ୍ଟ ଶସ୍ତା । ବନ୍ଦରର ଖୁବ୍ ନିକଟରେ ସବୁଠୁଁ ଜନଗହଳି ବଜାର । ଜଣେ ଭାରତୀୟ ଦୋକାନୀ କହୁଥିଲେ, ଏସିଆର କୌଣସି ବଜାରରେ

ଏପରି ଭିଡ଼ ସଚରାଚର ଦେଖାଯାଏ ନାହିଁ । ଅନ୍ୟାନ୍ୟ ଦେଶରୁ ଆସୁଥିବା ନାବିକ ଓ ଯାତ୍ରୀମାନେହିଁ ଏଠାରେ ବହୁତ ବେଶୀ କଣାକଣି କରନ୍ତି ।

ଶୃଙ୍ଖଳାକର ଓ ଉତ୍ତେଜନାମୂଳକ ସମ୍ବାଦ ପରିବେଷଣ କରିବାପାଇଁ କେତୋଟି ପତ୍ରିକା ଆତ୍ମୋତ୍ସର୍ଗ କରିଛନ୍ତି । ପ୍ରଥମ ପୃଷ୍ଠାରେ ଥିବ ହରଣଚାଳ କମ୍ବା ହତ୍ୟା । ତୃତୀୟ ପୃଷ୍ଠାରେ ସାଧାରଣତଃ ଧର୍ଷଣ ବା ସୁନ୍ଦରୀ ତାରକାର ଆତ୍ମହତ୍ୟା. ବିଦେଶୀ ପରିଚାଳିତ ଏଇସବୁ ପତ୍ରିକାର ନିଜସ୍ୱ ଅଭିଧାନ ଅଛି । ସେଥିରେ ସ୍ୱଦେଶପ୍ରେମୀଙ୍କୁ କୁହାଯାଏ 'ସନ୍ତ୍ରାସବାଦୀ ଗୁଣ୍ଡା' ସ୍ୱାୟତ୍ତ ଶାସନ-ପାଇଁ ଜନସାଧାରଣଙ୍କ ଆନ୍ଦୋଳନକୁ କୁହାଯାଏ 'ଅସାମାଜିକ ଉଚ୍ଛୃଙ୍ଖଳତା' ।

ଇଂରାଜର ଶକ୍ତି ଥିଲା ସମୁଦ୍ରଉପରେ ଓ ସୁଏଜ କେନାଲ ଭଳି ଜଳପଥରେ । ଆଜି ଜିବ୍ରାଲଟର୍ ସ୍ପେନକୁ ଫେରିଯିବା ଉପରେ । ସାଇପ୍ରସ୍‌କୁ କେନ୍ଦ୍ର କରି ଯେଉଁ ରକ୍ତକ୍ଷୟ ହେଉଛି, ତାର ପରିଣାମ କେବେ ବ୍ରିଟିଶ ସପକ୍ଷରେ ଯିବ ନାହିଁ । ତ୍ରିଙ୍କୋ-ମାଲିଠାରୁ ବ୍ରିଟିଶ ଘାଟୀ ଉଠାଇଦେବାପାଇଁ ସିଂହଳ ସରକାର ଘୋଷଣା କରିସାରିଲେଣି । ସୁଏଜରୁ ବ୍ରିଟିଶ ତାର ତମ୍ବୁ ଉଠାଇ-ନେବାକୁ ବାଧ୍ୟ ହୋଇସାରିଛି । ଏପରି ଅବସ୍ଥାରେ ମାଳୟର ଅଫୁରନ୍ତ ରବର ଓ ଟିଣ ସମ୍ପଦକୁ ଚାହିଁ ବ୍ରିଟିଶ ସରକାର ଯେପରି ଶେଷ ପର୍ଯ୍ୟନ୍ତ ସିଙ୍ଗାପୁରକୁ ଏକ କାରାଗାରରେ ପରିଣତ କରି ମଧ୍ୟ ନିଜ ଅକ୍ତିଆରରେ ରଖିବାକୁ ଚାହିଁବ, ଏଥିରେ ବିସ୍ମିତ ହେବାର କିଛି ନାହିଁ । ତେଣୁ ରାଜନୈତିକ, ସାଂସ୍କୃତିକ ଓ ନୈତିକ କୌଣସି ଦିଗରେ ସିଙ୍ଗାପୁରର ଯେପରି ସ୍ୱାଧୀନ ବିକାଶ

ସମ୍ଭବପର ହୋଇ ନ ପାରେ, ସେ ଦିଗରେ କର୍ତ୍ତୃପକ୍ଷ ଆଜି ସଜାଗ ଅଛନ୍ତି ।

ବାନ୍ଦୁଂରେ ଅବସ୍ଥାନ ସମୟରେ ସିଙ୍ଗାପୁରରୁ ଯାଇଥିବା ମାଳୟର ବହୁ ଯୁବନେତାଙ୍କ ସହ ମୋର ପରିଚୟ ହୋଇଥିଲା । ସେମାନଙ୍କ ସହ ସାକ୍ଷାତ୍‌ପାଇଁ ତୀବ୍ର ଅଭିଳାଷ ଥିଲେ ମଧ୍ୟ ବ୍ରିଟିଶ ଗୁପ୍ତଚରମାନଙ୍କ କଡ଼ା ନଜର ଯୋଗୁ ତାହାର ବିଶେଷ ପ୍ରୟୋଜନୀୟତା ଆଉ ଅନୁଭବ କଲି ନାହିଁ । ସମ୍ପ୍ରତି ବ୍ରିଟିଶ ସରକାର ରଙ୍ଗୀନ ଦମନ ନୀତିର ଆଶ୍ରୟ ନେଇ ସିଙ୍ଗାପୁରରେ ଏକ ବିରାଟ ଯୁବ ଅଭ୍ୟୁତ୍ଥାନକୁ ଚାପି ଦେଇପାରିଛନ୍ତି । ବହୁସଂଖ୍ୟକ ଯୁବ ମରିଛନ୍ତି ଓ ଶହ ଶହ ଜେଲରେ ଅଛନ୍ତି । ଏ ସମ୍ବାଦ ପଢ଼ିବାବେଳେ ଆଜି ସେଇସବୁ ଦୃଢ଼ପ୍ରତିଜ୍ଞ ଦେଶପ୍ରେମୀ ପରିଚିତ ଯୁବପ୍ରତିନିଧିଙ୍କ କଥା ବାରମ୍ବାର ମନେ ପଡ଼ୁଛି । ଦକ୍ଷିଣ ପୂର୍ବ ଏସିଆର ଏଇସବୁ ଅଞ୍ଚଳ ରାଜନୈତିକ ଦୃଷ୍ଟିରୁ ସର୍ବଦା ଅତ୍ୟନ୍ତ ଅବ୍ୟବସ୍ଥିତ ଅବସ୍ଥାରେ ଥାଏ । ଆଜି ସିଙ୍ଗାପୁରର ଚାରି ଦିଗରେ ସ୍ୱାଧୀନତା-ପ୍ରାପ୍ତ ରାଷ୍ଟ୍ରମାନଙ୍କର ନୂତନ ଜୟଯାତ୍ରା ଆଗରେ, ସିଙ୍ଗାପୁରର ଅବିଚ୍ଛେଦ୍ୟ ଦେଶ ମାଳୟରେ ସ୍ୱାୟତ୍ତ ଶାସନ ପ୍ରବର୍ତ୍ତନ ହେବାର ଉଦାହରଣ ଆଗରେ ସିଙ୍ଗାପୁର ଯେ ବେଶୀ ଦିନ ଏପରି ଶୃଙ୍ଖଳିତ ଅବସ୍ଥାରେ ରହିବ ନାହିଁ, ଏକଥା ସୁନିଶ୍ଚିତ ।

ପରିଶେଷରେ ପ୍ରତ୍ୟାବର୍ତ୍ତନର ଦିନ ଉପନୀତ ହେଲା । ମୁଁ ସିଙ୍ଗାପୁର ସହରଭିତରକୁ ପଶିବା ପୂର୍ବରୁ ମୋ ପାଖରେ ଥିବା ଯାବତୀୟ କାଗଜପତ୍ର ଓ ପତ୍ରପତ୍ରିକାକୁ ବିମାନ ଘାଟୀର କର୍ତ୍ତୃପକ୍ଷ ଜବତ କରିନେଇଥିଲେ ଏବଂ ମୁଁ ସିଙ୍ଗାପୁର ଛାଡ଼ିବାବେଳେ ସେ ସମସ୍ତ ଫେରିପାଇବି ବୋଲି କହିଥିଲେ ।

ମୋତେ ପ୍ୟାକେଟ୍‌ଟି ସେମାନେ ଫେରାଇଦେଇଥିଲେ ସତ୍ୟ; କିନ୍ତୁ କଲିକତାରେ ପହଞ୍ଚିବାପରେ ଦେଖିଲି ଯେ କେତେ ଖଣ୍ଡ ମୂଲ୍ୟବାନ୍ ବସ୍ତୁ ଓ ଇଣ୍ଡୋନେଶିଆର ମୁକ୍ତିଆନ୍ଦୋଳନସଂକ୍ରାନ୍ତ ଡକୁମେଣ୍ଟ ତାହାଭିତରେ ନାହିଁ ।


Digitized by srujan ka@gmail.com

# ଏସିଆ-ଆଫ୍ରିକା ଛାତ୍ରସମ୍ମିଳନୀ

ଆଜି ତିରିଶ ତାରିଖ ମେ, ୧୯୫୬ । ଠିକ୍ ବର୍ଷକ ତଳେ, ଏଇ ଦିନରେ ଇତିହାସରେ ପ୍ରଥମ ଥର ଏସିଆ ଓ ଆଫ୍ରିକା ଦୁଇ ମହାଦେଶର ୨୬ଟି ଦେଶର ଛାତ୍ର-ପ୍ରତିନିଧିମାନେ ବାନ୍ଦୁଂ ମହା-ନଗରୀରେ ଏକତ୍ରିତ ହୋଇ ପରସ୍ପର ସାମାଜିକ, ଶିକ୍ଷାଗତ ଓ ସାଂସ୍କୃତିକ ସମସ୍ୟାସମ୍ବନ୍ଧ ଆଲୋଚନା କରିଥିଲେ । ଦୁଇ ମହାଦେଶ ଓ ତନ୍ମଧ୍ୟସ୍ଥ ଦେଶସବୁମଧ୍ୟରେ କେତେ କେତେ ହିମାଳୟ ଭଳି ପାର୍ଥକ୍ୟ, ମହାସମୁଦ୍ରର ବ୍ୟବଧାନ । ତଥାପି ଦଶଟି ଦିନର ଆଲୋଚନା-ପର୍ଯ୍ୟାଲୋଚନା, ଭ୍ରାତୃସୁଲଭ ଭାବର ଆଦାନପ୍ରଦାନ-ଭିତରେ ସମବେତ ଏପରି ସବୁ ବିଷୟରେ ଏକମତ ହୋଇପାରିଥିଲେ, ଏପରି ସବୁ ସମସ୍ୟାର ସମାଧାନ ଲାଗି ଏକୀଭୂତଭାବରେ କାର୍ଯ୍ୟ କରିବାପାଇଁ ପରସ୍ପର ପାଖରେ ପ୍ରତିଶ୍ରୁତ ଦେଇଥିଲେ, ଯାହା ଏ ଦୁଇଟି ମହାଦେଶର ନବଜାଗ୍ରତ ଯୁବସମାଜର ପ୍ରଗତିଶୀଳ ଚେତନାର ସୂଚନା ଦିଏ, ଦୁଇ ମହାଦେଶର କ୍ରମୋନ୍ନତ ସୌହାର୍ଦ୍ଦ୍ୟ-ପ୍ରତି ସେମାନଙ୍କ ଶ୍ରଦ୍ଧାର ପରିଚୟ ବହନ କରେ ।

ଏସିଆ-ଆଫ୍ରିକା କାହିଁକି ଏସିଆ-ୟୁରୋପ ବା ଆଫ୍ରିକା-ଆମେରିକା ନୁହେଁ କାହିଁକି ?

ଏସିଆ ଓ ଆଫ୍ରିକା ଏ ଦୁଇ ମହାଦେଶଭିତରେ ସବୁଠୁଁ ବଡ଼ ମୌଳିକ ସାମଞ୍ଜସ୍ୟ ଯାହା, ତା ହେଉଛି, ଶତାବ୍ଦୀ ଶତାବ୍ଦୀ ଧରି ଏ ଦୁଇ ମହାଦେଶ ସାମ୍ରାଜ୍ୟବାଦୀ ଓ ଔପନିବେଶିକମାନଙ୍କର


Digitized by srujan ka@gmail.com

ଚାଲିଆସିଛି । ହୋଇଆସିଛି । ବହୁ ଯୁଗର ଅନ୍ଧକାରମୟ ଶୋଷଣର ପ୍ରାଚୀରକୁ ଧୂଳିସାତ୍ କରିଦେଇ ଆଜି ଏ ଦୁଇ ମହାଦେଶର ରାଷ୍ଟ୍ର-ମାନେ ମୁକ୍ତିର ଆଲୋକରେ ଆଲୋକିତ କିମ୍ବା ସେ ଦିଗରେ ଆଜି ବି ସଂଗ୍ରାମରତ । ତେଣୁ ସାମଞ୍ଜସ୍ୟ ଯେତିକି ନିବିଡ଼, ପରସ୍ପରର ବିକାଶପାଇଁ ପରସ୍ପରର ସାହାଯ୍ୟ ଓ ସହଯୋଗ ମଧ୍ୟ ସେହିପରି ଅପରିହାର୍ଯ୍ୟ । ଏଇ ଅନୁଭୂତିଦ୍ୱାରା ୧୯୫୫ ରେ ପ୍ରଥମ କରି ଏସିଆ-ଆଫ୍ରିକା ପ୍ରଧାନମନ୍ତ୍ରୀମାନଙ୍କର ସଫଳ ସମ୍ମିଳନୀ ଉଦ୍ଯାପିତ ହୋଇଯାଇଥିଲା ।

ଗ୍ରନ୍ଥସମାଜ ଅନୁଭବ କଲେ, ଅନ୍ୟାନ୍ୟ କ୍ଷେତ୍ର ପରି ଶିକ୍ଷାକ୍ଷେତ୍ରରେ ମଧ୍ୟ ପରସ୍ପରମଧ୍ୟରେ ବହୁ ସାଧାରଣ ସମସ୍ୟା ରହିଛି, ଯାହା ସମବେତ ପ୍ରଚେଷ୍ଟା ବଳରେ ଦୂରୀଭୂତ ହେବା ଏକାନ୍ତ ବାଞ୍ଛନୀୟ । ଏଇ ଲକ୍ଷ୍ୟ ନେଇ ଇଣ୍ଡୋନେଶୀୟ ଗ୍ରନ୍ଥ-ମାନଙ୍କର ନିମନ୍ତ୍ରଣକ୍ରମେ ଆଫ୍‌ଗାନିସ୍ଥାନ, ଆଲ୍‌ଜେରିଆ, ବ୍ରହ୍ମ, ସିଂହଳ, ଚୀନ ଲୋକତନ୍ତ୍ର, ଇଜିପ୍ଟ, ଇରାନ, ଭାରତବର୍ଷ, ଜାପାନ, ଜୋର୍ଡାନ୍, କ୍ୟାମେରୁନ୍, କୋରିଆ, ଲାଓସ୍, ଲେବାନନ୍, ମାଡ଼ାଗାସ୍କର୍, ମାଲୟ, ମରୋକ୍‌କୋ, ନେପାଳ, ପାକିସ୍ଥାନ, ଫିଲିପାଇନ୍‌ସ୍, ସୁଦାନ, ସିରିଆ, ଟୋଗୋ, ଟ୍ୟୁନିସିଆ, ଉତ୍ତର-ଭିଏତନାମ ଗଣତନ୍ତ୍ର ଏବଂ ପଶ୍ଚିମ ଆଫ୍ରିକାର ଗ୍ରନ୍ଥପ୍ରତିନିଧିମାନେ ଏଠାରେ ଆସି ଉପନୀତ ହୋଇଥିଲେ । ସମ୍ମିଳନୀ ଉଦ୍‌ଘାଟିତ ହେବାପରେ ଏବଂ ପ୍ରାଥମିକ ଆଲୋଚନାସବୁପରେ ସମସ୍ତ ପ୍ରତିନିଧିଙ୍କୁ ଛଅଟି କମିସନ୍‌ରେ ବିଭକ୍ତ କରାଯାଇଥିଲା ଏବଂ କମିସନ୍-ମାନେ ଦେଇଥିବା ରିପୋର୍ଟ ପୁଣି ଶେଷରେ ସମସ୍ତଙ୍କ ଆଗରେ ଉପସ୍ଥାପିତ କରାଯାଇ ଗ୍ରହଣ କରାଯାଇଥିଲା ।

ପ୍ରଥମ କମିସନ୍ ଛାତ୍ରମାନଙ୍କର ଶିକ୍ଷାଗତ ଦାବୀସବୁ ଉପରେ ଆଲୋଚନା କରି ଏଇ ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ, ବିଶ୍ୱ-ବିଦ୍ୟାଳୟଗୁଡ଼ିକ ଗବେଷଣା ଓ ଜ୍ଞାନ-ଆହରଣର ପ୍ରାଣକେନ୍ଦ୍ର ହୋଇଥିବା ଦୃଷ୍ଟିରୁ ସେସବୁର ପରିସରକୁ ଆହୁରି ବ୍ୟାପକ କରିବା ଉଚିତ । ବିଭିନ୍ନ ଦେଶର ବିଶ୍ୱବିଦ୍ୟାଳୟମାନଙ୍କ ଭିତରେ ବନ୍ଦୋବସ୍ତ ହୋଇ ବିଜ୍ଞାନ ଓ ଅନ୍ୟାନ୍ୟ ବିଷୟରେ ନିୟମିତ ସେମିନାର୍ ହେବା ଉଚିତ, ନୂଆ ନୂଆ ଗବେଷଣାଲବ୍ଧ ଅଭିଜ୍ଞତା ଏବଂ ଅଧ୍ୟାପକ ଓ ଛାତ୍ରପ୍ରତିନିଧି ଦଳର ଆଦାନପ୍ରଦାନ ହେବା ଉଚିତ । ଶିକ୍ଷାଗତ ଜୀବନ ବିଷୟରେ ତଥ୍ୟ ପରସ୍ପରକୁ ଜଣାଇବା ଉଚିତ । ଏସିଆ-ଆଫ୍ରିକା ସମ୍ପୃକ୍ତ ଇତିହାସ ସଙ୍ଗୃହୀତ ହେବା ଆବଶ୍ୟକ । ଏହି କମିସନ୍ ଆହୁରି ମଧ୍ୟ ପ୍ରସ୍ତାବ କରିଥିଲେ ଯେ, ବିଶ୍ୱବିଦ୍ୟାଳୟମାନଙ୍କୁ ସ୍ୱାୟତ୍ତଶାସନର ଅଧିକାର ପୂର୍ଣ୍ଣ ମାତ୍ରାରେ ମିଳିବା ଉଚିତ । ଛାତ୍ରମାନଙ୍କୁ ବକ୍ତୃତା ଓ ସଙ୍ଗଠନପାଇଁ ପୂରା ସ୍ୱାଧୀନତା ଦେବା ଦରକାର ।

ଦ୍ୱିତୀୟ କମିସନ୍ ଛାତ୍ରମାନଙ୍କର ସାମାଜିକ ଅବସ୍ଥା ବିଷୟରେ ଆଲୋଚନା କରି ମତ ଦେଇଥିଲେ ଯେ, ଏ ଦୁଇ ମହାଦେଶର ଛାତ୍ରଜୀବନ ସନ୍ତୋଷଜନକ ହେବା ତ ଦୂରର କଥା, ସାଧାରଣ ସବୁ ନିମ୍ନ ଆବଶ୍ୟକତାସବୁ ମଧ୍ୟ ଛାତ୍ରମାନଙ୍କପାଇଁ ପୂରଣ ହୋଇ-ପାରି ନାହିଁ । ତେଣୁ ବିଭିନ୍ନ ଦେଶର ବଜେଟ୍‌ରେ ଶିକ୍ଷାପାଇଁ ଅଧିକ ଅର୍ଥ ମଞ୍ଜୁର କରିବାର, ହଷ୍ଟେଲ୍ ଏବଂ ଅନ୍ୟାନ୍ୟ ସୁବିଧା କରିବାର ଅନୁରୋଧ ସରକାରମାନଙ୍କଠାରେ କରାଯାଇଥିଲା ।

ତୃତୀୟ କମିସନ୍ ସାଂସ୍କୃତିକ ସମସ୍ୟାମାନ ଆଲୋଚନା କରିଥିଲେ । ଆନ୍ତର୍ଜାତିକ କଳା ପ୍ରଦର୍ଶନୀପାଇଁ, ସାମୟିକଭାବରେ

ସାଂସ୍କୃତିକ ଉତ୍ସବର ଅନୁଷ୍ଠାନପାଇଁ, ଛାତ୍ରମାନଙ୍କ ସାଂସ୍କୃତିକ ଚେତନାକୁ ବଢ଼ାଇବାପାଇଁ, ଶିକ୍ଷାଗତ ସେମିନାର୍‌ସବୁପାଇଁ ଏ କମିସନ୍ ପ୍ରସ୍ତାବ ଦେଇଥିଲେ ।

ଚତୁର୍ଥ କମିସନ୍ ସ୍ପୋର୍ଟସ୍ ଇତ୍ୟାଦି ସମ୍ବନ୍ଧରେ ଆଲୋଚନା କରି ମତ ଦେଇଥିଲେ ଯେ, ଏସିଆ-ଆଫ୍ରିକାର ଦେଶମାନଙ୍କ ଭିତରେ ହକି, ଫୁଟବଲ ଇତ୍ୟାଦି ଖେଳାଳି ଦଳଙ୍କର ଘନ ଘନ ଆଦାନପ୍ରଦାନ ହେବା ପ୍ରୟୋଜନୀୟ, ବିଭିନ୍ନ ଦେଶର ଯୁବପ୍ରତିନିଧି ଦଳମାନଙ୍କୁ ଅନ୍ୟ ଦେଶମାନଙ୍କରେ ବୁଲିବାର ସୁଯୋଗ ଦେବା ଆବଶ୍ୟକ ଏବଂ ବିମାନ ଯୋଗେ ସେଥିପାଇଁ ସ୍ୱତନ୍ତ୍ର କନ୍‌ସେସନ୍‌ର ବନ୍ଦୋବସ୍ତ ହେବା ବିଧେୟ । ପରସ୍ପର ଚଳଚ୍ଚିତ୍ର ଆଦାନପ୍ରଦାନ ହେବା ସଙ୍ଗେ ସଙ୍ଗେ ଚଳଚ୍ଚିତ୍ର ଉତ୍ସବମାନ ଅଧିକରୁ ଅଧିକ ଅନୁଷ୍ଠିତ ହେବା ବାଞ୍ଛନୀୟ ।

ପଞ୍ଚମ କମିସନ୍ ସାମ୍ରାଜ୍ୟବାଦ ଓ ବିଶ୍ୱଶାନ୍ତି ବିଷୟରେ ଆଲୋଚନା କରି ମତ ଦେଇଥିଲେ ଯେ, ସାମ୍ରାଜ୍ୟବାଦୀମାନଙ୍କ ଅଧୀନରେ ଥିବା ପର୍ଯ୍ୟନ୍ତ କୌଣସି ଦେଶର ଶିକ୍ଷା ପ୍ରସାର ଲାଭ କରି ନ ପାରେ । ତେଣୁ ଏହା ଏକସ୍ୱରରେ ସାମ୍ରାଜ୍ୟବାଦକୁ ଧିକ୍କାର କରିଥିଲା ଏବଂ ଏହା ବିରୁଦ୍ଧରେ ଲଢ଼େଇ କରୁଥିବା ଜନସାଧାରଣଙ୍କ ପ୍ରତି ଗଭୀର ମମତା ପ୍ରକାଶ କରିଥିଲା । ମିଳିତ ଜାତିସଂଘ ସନନ୍ଦରେ ଥିବା "ମାନବିକ ଅଧିକାର"ର ଘୋଷଣା ଯେପରି ବାସ୍ତବିକ କାର୍ଯ୍ୟକାରୀ ହୁଏ, ତାହା ଦେଖିବାପାଇଁ ଏହା ପ୍ରସ୍ତାବ ଦେଇଥିଲା । ଆଲ୍‌ଜେରିଆର ସ୍ୱାଧୀନତାସଂଗ୍ରାମ ସପକ୍ଷରେ, ପଶ୍ଚିମ ଇରିଆନ୍‌କୁ ମୁକ୍ତ କରିବାପାଇଁ ଇଣ୍ଡୋନେଶୀୟମାନଙ୍କ ଦାବୀକୁ ସମର୍ଥନ କରି ମଧ୍ୟ ପ୍ରସ୍ତାବ ଗ୍ରହଣ କରିଥିଲା ।

ବିଶ୍ୱଯୁଦ୍ଧର ସମ୍ଭାବନାକୁ ରୋକିବା ଦିଗରେ ଏସିଆ-ଆଫ୍ରିକାର ରାଷ୍ଟ୍ରସମାଜ ସଚେଷ୍ଟ ହେବେ ବୋଲି ପ୍ରସ୍ତାବ କରାଯାଇଥିଲା । ତାହାସହ ଦାବୀ ମଧ୍ୟ କରାଯାଇଥିଲା, ପୃଥିବୀର ସମସ୍ତ ରାଷ୍ଟ୍ର ଯେପରି ମିଳିତ ଜାତିସଂଘରେ ସ୍ଥାନ ପାଆନ୍ତି, ସେ ଦିଗରେ ମିଳିତ ଜାତିସଂଘର ସଭ୍ୟମାନେ ଅବହିତ ହେବା ଉଚିତ ।

ସମ୍ମିଳନୀ ଦାବୀ କରିଥିଲା ଯେ, ପରମାଣୁ ମାରଣାସ୍ତ୍ରର ପରୀକ୍ଷାନିରୀକ୍ଷା ବେଆଇନ ହେଉ ଏବଂ ସଂପର୍କୀୟ ଗବେଷଣାକୁ ମାନବସମାଜର ହିତପାଇଁ ଗଠନମୂଳକ କର୍ମଯୋଜନାରେ ପ୍ରୟୋଗ କରାଯାଉ ।

ବର୍ଣ୍ଣବିଭେଦ ବିଷୟରେ ଏ ସମ୍ମିଳନୀ ପ୍ରସ୍ତାବ ଗ୍ରହଣ କରି କହିଥିଲା ଯେ, ଏହା ମାନବ ସଭ୍ୟତାର ଅନ୍ତରାୟ ଓ ଏହା-ବିରୁଦ୍ଧରେ ଆଫ୍ରିକାର ସଂଗ୍ରାମୀ ରାଷ୍ଟ୍ରମାନଙ୍କୁ ସମ୍ମିଳନୀ ଶ୍ରଦ୍ଧା ଜଣାଉଛି ।

ସମ୍ମିଳନୀର ଏସମସ୍ତ ପ୍ରସ୍ତାବକୁ ଛାଡ଼ିଦେଲେ ମଧ୍ୟ ପ୍ରଥମ ଥରପାଇଁ ଏ ଦୁଇ ମହାନ୍ ଭୂଖଣ୍ଡର ରାଷ୍ଟ୍ରମାନେ ଯେ ପରସ୍ପରଂ ମିଶିବାର ଅବସର ପାଇଥିଲେ, ପରସ୍ପରକୁ ଜାଣିବାର ସୁଯୋଗ ପାଇଥିଲେ, ତାହା କିଛି କମ୍ କଥା ନୁହେଁ । ପ୍ରତିନିଧି ଦଳମାନଙ୍କ ମଧ୍ୟରେ ପରସ୍ପର ଚର୍ଚ୍ଚା ଏକ ଉଲ୍ଲେଖଯୋଗ୍ୟ ଘଟଣା । ଭାରତୀୟ ପ୍ରତିନିଧି ଦଳକୁ ଭିଏତ୍‌ନାମ, କୋରିଆ ଓ ଚୀନ ପ୍ରତିନିଧିବର୍ଗ ଡାକିନେଇ ଭୋଜି ଦେଇଥିଲେ । ସେସବୁ ବନ୍ଧୁତ୍ୱପୂର୍ଣ୍ଣ ମିଳନ ଅପୂର୍ବ ଆନନ୍ଦଦାୟକ !

ସମ୍ମିଳନୀ ଚାଲିଥିବାବେଳେ ଦିନେ ହଠାତ୍ ଗୋଟିଏ ଅବିସ୍ମରଣୀୟ ଘଟଣା ଘଟିଯାଇଥିଲା । ବାନ୍ଦୁଂଠୁ ବହୁଦୂରବର୍ତ୍ତୀ

ଏକ ଗାଁରୁ ଦଳେ କୃଷକ ଝନେ ପ୍ରତିନିଧିମାନଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ସ୍ୱତଃସ୍ଫୂର୍ତ୍ତଭାବରେ ବହୁତ ଫଳମୂଳ ଭେଟି ଧରି ହଲ ଭିତରକୁ ପଶିଆସିଲେ । ସମରକନ୍ଦ ଏକ ସଦାପରିଶ୍ରମୀ ଜନତାର ସେ କି ଆବେଗ ଓ ସ୍ନେହପ୍ରବଣତା ! ପ୍ରତିନିଧିମାନେ ସମସ୍ତେ ଅଭିଭୂତ ହୋଇପଡ଼ିଲେ । ପ୍ରତିନିଧିମାନଙ୍କୁ ଆଶୀର୍ବାଦ କରି ସେମାନେ ବିଦାୟ ନେଇ ଗଲେ ।

ବିପୁଳ ଉଦ୍ଦୀପନା ଓ ଆନନ୍ଦ ଭିତରେ ଏସିଆ-ଆଫ୍ରିକା ଯୁବସମ୍ମିଳନୀ ପରିସମାପ୍ତ ହେଲା ।

---

ମୁଦ୍ରାକର—ପଣ୍ଡିତ ଶ୍ରୀ ଭୁବନେଶ୍ୱର ମିଶ୍ର, ପ୍ରଭାତୀ ପ୍ରେସ୍, କଟକ-୨

